# କଳା କଉତୁକ



ପ୍ରକାଶକ:-
ଓଡ଼ିଶା ଜଗନ୍ନାଥ କମ୍ପାନୀ-କଟକ-୨

୰କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ

# କଳାକଉତୁକ

ଟୀକାକାର ଓ ସଂଗ୍ରାହକ

**ପଣ୍ଡିତ ଶ୍ରୀ ଶ୍ୟାମସୁନ୍ଦର ନାୟକ**

ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା ପ୍ରକାଶିତ

ପ୍ରଥମ ସଂସ୍କରଣ

୧୯୫୮

ପ୍ରକାଶକ




ମୂଲ୍ୟ—ବାର ଅଣା

# କଳାକଉତୁକ

## ପ୍ରଥମ ଛାନ୍ଦ

(ରାଗ—ରାମକେରୀ)

କମଳଧର ହେ କମଳଧରଜିତ ନାୟକ ।
କମଳଧର ଯାର ବ୍ରହ୍ମ ନାମ ସଦା ଧାୟକ ।୧।
କମଳା ସାକ୍ଷାତ କମଳାସାର ସୀତା ନାୟକ
କମଳାସନ ଦିବ୍ୟରୂପେ ନନ୍ଦେ ପୁଷ୍ପଶାୟକ । ୨
କଦମ୍ବ କଦମ୍ବ ଋଷିଏ ନାରୀ ହେବା ଲାୟକ ।
କଦମ୍ବ ଫୁଲକୁ ତ ତନୁ ଗୃହିଁ ଶୋଭା ସାୟକ । ୩
କଳାପ କଳାପ ବହ୍ନିନେ ଜଟା ଯେ ବଧାୟକ ।
କଳାପକନ୍ଧରେ ରଜିତ ଧୃତ ଧନୁସାୟକ । ୪ ।
କନ୍ଧବ ନୃତ୍ୟ କଉତୁକୀ ହେ କବନ୍ଧଘାୟକ ।
କନ୍ଧବ ଗତ ଯାହା କୋପ ଗୃହିଁ ଅତ ଭୟକ । ୫ ।
କର୍ବୁର ନଗରେ କର୍ବୁର ବାରବର ସାୟକ ।
କର୍ବୁର ସ୍ତମ୍ଭନେ ସାଗରେ ବନ୍ଧ ଯେ ଉପାୟକ । ୬ ।

କତ କଳ୍ପରେ ଅଗୋଚର ଖ୍ୟାତ କୀର୍ତ୍ତିଚନ୍ଦ୍ରକ ।
କଳ୍ପ କରିଅଛି ହୋଇବା କଳ୍ପ ହେ ସଞ୍ଚୟକ । ୭ ।
କରୁଣାକର ହେ କରୁଣା କର ହୋଇ ହେତୁକ ।
କହିବି ଚନ୍ଦ୍ରାବଳୀ କୃଷ୍ଣକଳା କେଳି କୁତୁକ । ୮ ।
କଳାକଉତୁକ ଏ ଗୀତ ନାମ ହେବ ଖ୍ୟାତକ ।
କରୁଥିବେ ପ୍ରଭୁପାଦରେ ବାସ ଆଦ୍ୟ ପ୍ରାନ୍ତକ । ୯ ।
କଷ୍ଟକୁ ଜାଣିବେ ସୁକବି ଯେଉଁମାନେ ପ୍ରାଚିକ ।
କ ଥାଉ ଭ୍ରମରେ ଯେ ଖଳ ଯେହି ପରିପନ୍ଥିକ । ୧୦ ।
କଳି ନ ଥିବ ଅଭିଧାନମାନ ଶବ୍ଦମାନଙ୍କ ।
କଥା ପ୍ରସଙ୍ଗ ବୋଲିଇବ କଥା କହି ସେ ଲୋକ । ୧୧ ।
କାର୍କଶଶିଳାକୁ ଜଳୌକା ନକ ହୋଏ ଦଂଶକ ।
କଉଶିକେ କଛି ନ ଦଶେ ହେଉଁ ପ୍ରାତଃ ଆଲୋକ ।୧୨।
କତଲ ବୁଢେ ମଧ୍ୟରେ କ ପୁଟି ଦେଇ ଝଟକ ।
କଞ୍ଚୁକିନ ଇଳାମଣିକ କହି ଗୋପ କଟକ ।୧୩।
କତଣୀ ରତ୍ନକ କରଣେ ଛଡ଼ ଅଛନ୍ତି ନାକ ।
କଉଣସି ସ୍ଥଳ ଉଦୟ ଯଥା ଇନ୍ଦ୍ର କାର୍ମୁକ ।୧୪।
କଇରବ କୋକନଦ କ ସନଦୀରେ ସ୍ଫୁଟକ ।
କଳାନିଧି ଭାନୁ ରଜନୀ ଦନେ ସେହି ଛୁଟକ ।୧୫।
କଳିର ପଦ୍ମର ନରେଖି ଯହିଁ ଆସି ଗୈରକ ।
କଳ୍ପ ହେଲ ଭବ ପଳାଇ ହୋଇ ମହାଭୀରୁକ । ୬।
କଗଳୀ ଜଗତରେ ହେଇ ନାରୀ ଶିଶୁ ଜାତକ ।
କଳକଣ୍ଠ ଦେଶଭାଷାରେ ଯୋଗ ଗୀତଗାୟକ ।୧୭।
କଳହପ୍ରିୟ ନଭେ ଗମେ ହୋଇ ବୀଣାବାଦକ ।
କଲୁଭ ବୃହାନ୍ତ ବସ୍ତୁର କରିବଇଁ ଦେଶିକ ।୧୮।

କଦଳୀ ଚଞ୍ଚଳା ହରିତାମ୍ବରେ ଏହି ଶମ୍ପକ ।
କରନ୍ତି ଚଞ୍ଚଳା ହରିତାମ୍ବରେ ଲୀଳା ରମ୍ୟକ ।୧୯।
କତରଣେ ଚଞ୍ଚଳା ହରିତାମ୍ବର ଲୀଳାବାଞ୍ଛକ ।
କର ପ୍ରସୃଲେ ପୁନଃପୁନଃ ସେହି ଏକା ଲକ୍ଷକ ।୨୦।
କର କମ୍ପା କଣ୍ଠ ମର୍କତେ ଅଙ୍ଗ ସହି ସ୍ଫଟିକ ।
କଳିନ୍ଦ ଜଗତେ ଗଙ୍ଗାରେ ଏହି ପରିପାଟିକ ।୨୦।
କରୁଁ ଦୃଷ୍ଟି ସ୍ନେହି ଜ୍ୟୋତିକ ଲୋଭୀ ଗୋ କଦମ୍ବକ ।
କବଳି ଆସେ ଗୋପମଣି ଆସେ ଅବଲମ୍ବକ ।୨୨।
କଳରବ କଳରବରୁ ଜଣା ଯାମ ଯମକ ।
କରୁଁ ଲୋକନ ଚନ୍ଦ୍ରମଣି ନଶା ଦିନ ବାରକ ।୨୩।
କଳନା ଲଙ୍କା କ ସେ ଶୁକ ମନ୍ଦୋଦରୀ ଦୀପକ ।
କଳ୍ପନା ଅଳକା ଧନଦ ବିଭୂଷିତ ପୁଷ୍ପକ ।୨୪।
କଉଶିକ ବାସ ସ୍ୱର୍ଗ କ ସିଦ୍ଧବନ ସିଦ୍ଧକ ।
କବିର ଉଦିତ ବେନ କ ରାମାୟଣ ପୁସ୍ତକ ।୨୫।
କରସି ଏ ରାଧା-ସ୍ପନ୍ଦକୁ ମଥୁରେତୁ ପ୍ରାପ୍ୟେକ ।
କଇରବପୁରୀ ପ୍ରଭମ ପୁଣି ଚନ୍ଦ୍ରକୈଠକ ।୨୬।
କରାଉଛି ଏତେ ପ୍ରଶାନ୍ତ ସେ ସୁରଭି ପୂର୍ଣ୍ଣିକ ।
କର କଶକ ଦଣ୍ଡେ ଛନ୍ଦ ବ୍ରଜ ତହିଁ ଦୀପ୍ତକ ।୨୭।
କଳ ହେ ତାଳ ଗଡରେ ଯେ, ହୀନ ସେ ବିଶୁଦ୍ଧକ ।
କଲି ହେ କାଳଗଡରେ ଯେ ଘନ ମନବୋଧକ ।୨୮।
କଣ୍ଟକରେ ସଦା ଅଛଇ ସେହୁ ଅଧରକ୍ଷକ ।
କଣ୍ଟକ'ରେ ପୁଣି ହୁଅନ୍ତି ହିମନ୍ତରେ ଭୂଷକ ।୨୯।
କଦାଚିତରେ ହୀନ ମନ୍ଦ ତହିଁ ନାହାନ୍ତି ଏକ ।
କରନ୍ତି ଏକ ଯଶ ଦାସେ ଦିନ ମନ୍ଦ ଅନେକ ।୩୦।

କବି ଶିଷ୍ୟଗଣେ କରନ୍ତେ ଯହିଁ ରମାନାଥଙ୍କ ।
କଷ୍ଟକୃତ ନରଲୀଳାରେ ବତ୍ସ ଧେନୁପାଳକ ।୩୧।
କ୍ରମେ ପୂତନା ଶକଟ ଗୁଣି ତୃଣାବର୍ତ୍ତଙ୍କ ।
କରି କ୍ଷୟ ତହୁଁ ଧାଇଲେ ବକାସୁର ଅନ୍ତକ ।୩୨।
କରିବାକୁ କେଳି ଆଗମ ବୃନ୍ଦାବନ ରାଜକ ।
କଶ୍ୟପସୁତଙ୍କ ମାନସ ନନ୍ଦନରୁ ଭ୍ରାଜକ ।୩୩।
କଥନ ଶୋଭା ନୋହେକ ଯେ କ୍ଷଣେ କ୍ଷଣେ ବାଚକ ।
କର ନାମ କୀର୍ତ୍ତି ଚୈତ୍ରରଥ ଏ କ ରୁଚକ ।୩୪।
କଦମ୍ବ କଦମ୍ବ ତରୁଣ ତରୁ ନୂଆ ଖନକ ।
କରୁକରି ନୋକଲତାରେ ପୁଣି ପତ୍ରପୁଷ୍ପକ ।୩୫।
କଳାଧର ସୂର କରଣ ଅଂଶୁମାନ ଭେଦକ ।
କରଷଣ କଲ୍ପ ପତ୍ରେ ତହିଁ ଚମ୍ପା ଆଲୋକ ।୩୬।
କଳା କମଳରେ ଗଉର ପୁଂସ କ ଲମ୍ପଟକ ।
କରୁ ସନ୍ତରୁ ନିବାସ ସର୍ବ ପୁଷ୍ପ ସ୍ଫୁଟକ ।୩୭।
କଥା ନ କହନ୍ତି ତରୁ ଯେ ତପୀ ଜଟାଧାରକ ।
କ୍ରମେ ସମ୍ଭଲେ ଅଗସ୍ତି ଯହିଁ ପୁରୁସୂକ୍ତକ ।୩୮।
କରିବାରେ ଗୁଳ୍ମ ଉଜ୍ଜ୍ୱଳ ସ୍ୟନ୍ଦନରେ ଠିକ ।
କପାଟ ଭେଦନେ ବିନାଶ ଯହିଁ କଂସସେନକ ।୩୯।
କଳପୀ ନଟନ୍ତି ରଟନ୍ତି ଯହୁଁ ପରିପୁଷ୍ଟକ ।
କରନ୍ତେ ଗୁରୁପଣ ସ୍ଥିତ କ ନର୍ତ୍ତକ ଗାୟକ ।୪୦।
କମ୍ପିଲେ ତା ପୁଚ୍ଛକର କ ଦେଖାନ୍ତି ଏ ହସ୍ତକ ।
କଙ୍କଣ କ ଅଳି ମଣ୍ଡଳି ମରକତ ପଙ୍କ୍ତିକ ।୪୧।
କପୋତ-କଣ୍ଠରୁ ଆଦରେ କସ ମୃଦୁ ଆନକ ।
କଟାକ୍ଷିନି ନେତ୍ର ଚାହିଁଲେ ଅତି ଶୋଭା ସ୍ଥାପକ ।୪୧।

କମନୀୟ ପୁଷ୍ପ ବେଢ଼ାରେ ନବପୁଷ୍ପ ଅଶୋକ ।
କଣ୍ଟିହ ଝିଲ୍ଲିକା ଝଙ୍କାର ପୁଣ ତାଳମେଳକ ।୪୩।
କଳକଣ୍ଠ ଆଦ୍ୟ ଆକାରବନ୍ତ ସୂତ୍ରଧାରକ ।
କର ସଜଟେଳ ବୃକ୍ଷରାଜ ପଦ ଯେ ଭଣ୍ଡାରଙ୍କ ।୪୪।
କରିଅଛି ଦେବୀ ସଙ୍ଗତେ ସହଚରୀ ପୁତ୍ରକ ।
କରି ବର୍ଣ୍ଣେ ବିବେଚନା ହେ ଆରମ୍ଭି କି ନାଟକ ।୪୫।
କଉଶଳ ପୁଣି ପୁଂନାଗ ଚିଠିବିଠ ପାଣ୍ଡୁକ ।
କଳାପେ ସୁନାରୀ ସୁମନା ଗଣିକା ହେ ହର୍ଷକ ।୪୬।
କଉଁ ଜଳଘାଟେ ମରାଳ ଭେଦେ ଆଟମ୍ଭ ମାନକ ।
କର ପୁଷ୍ପେ ହାସ ମଲ୍ଲିକା କୁନ୍ଦ କାଶ ସାହିକ ।୪୭।
କର ପଲ୍ଲବରେ ଉନ୍ନତଠାରେ ମୁହିଁ କନକ ।
କମ୍ପେ ଏ କିତବ ବୋଲି କି ନାଗେଶ୍ୱର ଚମ୍ପକ ।୪୮।
କଳ କଳ ଯାହା ହୁଅନ୍ତି କହନ୍ତି ଶାରୀ ଶୁକ ।
କରନା ଶୋଚନା ଗନ୍ଧର୍ବ ବିଦ୍ୟାଧରଗୁ ବୁକ ।୪୯।
କରୁଛନ୍ତି ରସ ସୁମନ ଜାତ ବେମ୍ନା ବନ୍ଧୁକ ।
କରିରଦ ବେନ ଅଛି କି ଅଛି ତନପ୍ରିୟକ ।୫୦।
କମଳନ୍ଦ ବନ କାନନ ବନ ସମାନ ଛକ ।
କରିଣ କୁମୁଦ ଅମ୍ବୁଜ କୋଳ ପରିତୋଷକ ।୫୧।
କବରୀ ସଞ୍ଜୀବନୀ ଦ୍ରବା ନଶୀ ପ୍ରାବୃକଳାକ ।
କରେ ସମବନେ ହରିର ଲୀଳା ଉତ୍ତ୍ରସ୍ତରଙ୍କ ।୫୨।
କରିବ ଆନେ ବର୍ଣ୍ଣେ ବାଚ ଅର୍ଥ ବାଣ୍ଟି ଆର୍ଥିକ ।
କବି କୃତେ ପୂର୍ବେ ନାହିଁଟି ଶ୍ଳେଷ ଏ ବିଧି ଶ୍ଳୋକ ।୫୩।
କହିଲେ ଗୋପ ବୃନ୍ଦାବନ ଶୋଭା ଲବ ଲବକ ।
କବି ଉପଇନ୍ଦ୍ର ଭଞ୍ଜ ହେ ସୀତାରାମ ଭାବୁକ ।୫୪।



## ଦ୍ୱିତୀୟ ଛାନ୍ଦ

(ରାଗ—ଚୋଖି)

କହିବା ବ୍ରଜବିଳାସ, ଶୁଣି ଜନେ ହୁଅ ତୋଷ,
ଗୋପରେ ଜନମ ନିତ୍ୟ ନାୟକ ଯାକ,
କଳ୍ପାନ୍ତରୁ ଦେବଋଷି, ହେବା ସ୍ତ୍ରୀ ଭାବ ମନାସି
ଥିଲେ ସେ ତାଙ୍କୁ ହେଲେ କାମନାଦାୟକ,
କଉସ୍ତୁଭମଣି ଧାରକ,
କରି ଚିତ୍ତେ ପରକୀୟା ରସ ଅଧିକ ।୧।

କହନ୍ତି ଆମ୍ଭ ବଲ୍ଲଭୀ, ଗୋପାଳେ ହୋଇଣ ଲୋଭୀ
ଇନ୍ଦୁକୁମୁଦିନୀ ପରି ଭାବ ସ୍ନେହିକ,
କରିଣ ମଧୁସୂଦନ, ଭୋଗରେ ତାହା ବିଧାନ,
ନୋହିଲେ କାହିଁକି ବିହି ଲୋକପାଳକ,
କମନୀୟ ସେ ଏକୁଁ ଏକ,
କଲ କେଉଁ କୁଳେ କୁଳ କେଉଁ କରକ ।୨।

କଦଳୀ କି ସେ ଊରନ୍ତି, ସୁନ୍ଦରପଣେ ଜଗତି
ସେହିମତ ବିରଜନ୍ତି ତରୁ ଅମ୍ବକ,
କଳକଣ୍ଠ ପରି ଗତି, କଣ୍ଠ ମଧୁର ଭାରତୀ
ବଦନ ଭାଷ ଆକୃତ ବିଧୁରଙ୍କକ,
କୁଚ କୁଚ ତାଳି ବାଦକ,
କରମେ କରମେ କାଳକଣ୍ଠ ବନ୍ଦକ ।୩।

କଲେ ଲେଖା ଚଉଷଠି ସହସ୍ର ଯେ କଳକଣ୍ଠୀ
ବାଲ୍ୟକାଳୁଁ ତାଙ୍କର ସେ ଯେ ମମତକ,

କଇଟଭ ପ୍ରାଣହର                    କଇତବ-ରୂପ-ଧର
ପ୍ରଥମ ରସରେ ମହା ଉନମନ୍ତଙ୍କ,
କରିବା ପ୍ରକଟିତ ସ୍ନେହଙ୍କ,
କଟାକ୍ଷେ ଦୋଳଣଯୁବ କ ଉଚାଟଙ୍କ ।୪।
କଷ୍ଟକରି ଦେଲ ନାରୀ                    ଉରଜ କୁମ୍ଭକୁ ଧରି
ପୂର୍ବେଦରେ ଯାଉଁ ଯୁବା ତତକାଳଙ୍କ ।
କଳାକେଳିରେ ପ୍ରବୀଣ                    ହୋଇ ରତ ଅଗ୍ରଣୀ
ପ୍ରେମଧନେ କିଣି କଲେ ଅନୁସେବକ ।
କଳା ବୃଦ୍ଧି ଚନ୍ଦ୍ର ପ୍ରାୟେଙ୍କ ।
କଳୁଭ ଧରଣୀ ଯେହ୍ନ ପ୍ରସ୍ତବନ୍ତକ । ୫ ।
କଉତୁକ ପ୍ରକାଶିବ                    ରସବଚନ ଝଡ଼ିବ
ବଚନେ ଲୁବ୍ଧଇ ନିଅ ଖେଳା କନ୍ଦୁକ ।
କାନ୍ଥୁ ନାହିଁ ସତ କହି                    କାହିଁ ସ୍ପୃଷ୍ଟ ସ୍ଥାନ ଛୁଇ
ବୋଲନ୍ତି ଯେ ଏହି ଏହି ଏଡ଼େ ହାଟକ
କଳାବତୀ ହାସ ସର୍ବଙ୍କ ।
କରୁ ଦେବା ନୁଅନ୍ତି ଅର୍ଜନ ତେଜଙ୍କ । ୬ ।
କରନ୍ତି ସାରଣା ଘାଟେ                    ଟଙ୍କାର ହୋଇ ଦୁଟେଷ୍ଟ
ଚଉଷଠି ପଣକର ଦାନ ମାନବଙ୍କ ।
କାହ୍ନ ଭର୍ଗିତ କାହିଁକ                    ଯିବା ସାର୍ଦ୍ଧ ଦଧି ଶଙ୍କ
ଛଳ ହୋଇଲେ କାଳିକ କଣ୍ଟକାରକ ।
କହି ନୁହେ ଏକଥା ଠକ ।
କହୁ ଯା ଆନ ନୋହିବ କାଳକାଳଙ୍କ । ୭ ।
କମଳଧରଜା କୂଳେ                    ନୀର ଆଣି ଯିବାବେଳେ
ବଳେ ଧରି କୁଞ୍ଜୋଦରେ ସେ ପ୍ରବେଶକ ।

କହୁଁ କାହ୍ନିକ କାତରେ    କମଳ ଗୈଗ୍ରଇ କରେ
ନାଥ ସ୍ୱଜ୍ୟର ଆକଠ ବୋଲି ରଙ୍କିକ ।
କହ୍ନି ଏହା ଲୀଳା ରଚକ ।
କରି ଯା ରତନ ବରେ ଦାନବେଲକ୍ଷ । ୮ ।
କର ଏକାନ୍ତେ ଲୋକନ    ଯେଉଁଦ୍ଦିନ ଯାରେ ମନ
ଘ୍ରାଷନ୍ତରେ ଧନ ହୁଅ ରଣଦାୟକ ।
କଲନ୍ତର ବୃଦ୍ଧି ହେବ    ଏ ଜନ୍ମେ ସୁଝି ନ ଯିବ
ହୋଇଛି ମୁହିଁ ନିର୍ଦ୍ଧନ କୃପଣ ଲୋକ ।
କାଲ୍ପି ହସ ଭାବ ପଦ୍ମକ ।
କହ୍ଲାର କରି ଯା ହେଉ ସେ ଉଲ୍ଲାସକ । ୯ ।
କନ୍ଦର୍ପ ଭୂତ ଲଗାଇ    ବିହାର ରଚିଲେ କାହିଁ
ବ୍ୟାଧି ଚିହ୍ନି ନାଇ ପୁଣି ସେ ଚିକିତ୍ସକ ।
କର୍ଣ୍ଣଧାର ହୋଇ କେତେ    ଗୋପୀ ମୋହିଲେ ସରିତେ
ପୁଷ୍ପ ଦେଉଁ କେତେ ମୋହି ହୋଇ ମାଳିକ ।
କନ୍ୟା ଭଗ୍ନୀ ରୂପଧାୟକ ।
କଞ୍ଜନ-ରସ ରହିଣ ସେ ବଧାୟକ । ୧୦ ।
କଉଣସି ପୁରେ ନଶୀ    ତା ବଧୂ ରସରେ ମିଶି
ସୁଜାଣ ଆଖି ସମ୍ଭବେ ହେଉଁ ବନ୍ଧକ ।
କଜ୍ଜ୍ୱଳ ଧ୍ୱଜ ଦାପିତେ    ଗୁଣ୍ଠ ହେଲେ ଗୋପୀ ଯେତେ
ନିଜ ସୁତ ବନ୍ଧା ଦେଖି ହେଲେ ନନ୍ଦକ ।
କରେ ବାଳା ଚିତ୍ତେ ବିବେକ ।
କରିଥିଲେ କୃଷ୍ଣ ବିଜେ ଏ କ ଚିହ୍ନକ । ୧୧ ।
କଳାନ୍ତେ ଯାହା ମନ୍ଦିରେ    ଉଦର ଛୀଣର ଉରେ
ଆଉକୁଁ କହନ୍ତେ ଅପସର ଏ ବାକ ।

କଲା ଗଣ୍ଡ ସୁବଳ୍ଲଭ ସେହ୍ନ କରଣୀ ଦୁର୍ଲ୍ଲଭ
ଖେଳଲେ ଅଙ୍କୁରେ ହୋଇ ଗନ୍ଧ କନ୍ଦକ ।
କରେ ପୁଚ୍ଛା ସେହୁ ନାୟକ ।
କହ ଗୋ କାହୁଁ ଆସିଲା ଏହା କଟସ୍ତାକ । ୧୨ ।
କପିସାଞ୍ଜନ ଯାହାର ମାୟାରେ ମୋହି ତହୁର
ସେ ହେଲା ଉତ୍ତରୁ ଗୋପୀ ପୁଣ ଦଶକ ।
କର ତ ବିଗୃର ମନେ ଅନୁରାଗ ଦିନେ ଦିନେ
ଅଧିକ ହୋଇ ବାରନ୍ତ ହେଲା ଅଧିକ ।
କଳାବର୍ଣ୍ଣ କଳା ବର୍ଦ୍ଧକ ।
କସ୍ତୁରୀ ଲେପନକାରୀ ଅଙ୍ଗ ପଣ୍ଡକ । ୧୩ ।
କଳାମେଘୀ ଶାଢ଼ୀ କଳା ନୀଳକାଚ ବାହି ମେଳା
ନୀଳକାଚ ବାହି ହସ୍ତେ ସେହୁ ଭୂଷକ ।
କଳାପୀ ସୁମଣିମାଳା ମଣ୍ଡନ କରନ୍ତ ଗଳା
ମର୍କତରେ ସଜଡ଼ାଇ ଗୃରୁ ତାଟଙ୍କ ।
କର୍ଣ୍ଣପୂର ନୀଳ ନାଳକ ।
କଲା ଲଳସୀ ତାକକୁ ଉତଫୁଲ୍ଲକ । ୧୪ ।
କଳାପୀ ବରହିଚୂଳ ଭ୍ରମ କରଇ କୁନ୍ତଳ
ଚନ୍ଦ୍ରେ ରଖିଅଛି କ ସେ ସୁତ କୋରକ ।
କମଳାକ୍ଷ ଅପଘନ ଘନରସେ ପୁନଃ ପୁନଃ
ନବେଶିତ ଅବିରତ ଚିହ୍ନ ଗୃତକ ।
କର୍ଣ୍ଣ ବେଣୁନାଦେ ଦନ୍ତକ ।
କଦଳ ଘର୍ଣ୍ଣି ନାଦରେ ବୀଣାତୁଲାଂକ । ୧୫ ।
କରୀ ନସ୍ତାରକ ହରି କରି ମୋହ ବସ୍ତ୍ର ହରି
ଝାନେ ହୋଇ ମୁନପ୍ରାୟେ ଏକଳାୟକ ।

କଲ୍ କାଳେ ରଣ୍ଡ ପର୍‌ ବିହ୍ନିଥିବା ଏହି ତୋର
କୁସୁମେ ଭ୍ରମର ଗୁହ୍ନି ସେ ସନ୍ଧ୍ୟଭଙ୍କ ।
କଲ୍ଲି ହେଉଁ ଦର୍ଦ୍ଧମନ୍ଥକ ।
କଥାମାନ ଯୋଡ଼ି ଗୀତଗାନ ତାନକ । ୧୬ ।

କମଳଦ ଚିତ୍ତେ ଧାର୍ଯ୍ୟି ମଦନକୁ ମୋହେ ଯେହି
ସକଳ କାଳରେ ବଶ କରେ ତ୍ରିଲୋକ ।
କରନ୍ତି ଭାନୁଜା ତଟେ କ୍ରୀଡ଼ା ଭାନୁଜା ଲମ୍ପଟେ
ସଂଯୋଗ ହୋଇଲେ ଆଉ ଭାନୁଜା ଏକ ।
କଲ୍ପନା ମୋ ହେବ ଠିକ ।
କରି ବାସ୍ତେ କୃଶ-ମଧ୍ୟା ସୁସାସୁକ୍ରକ । ୧୭ ।

କମ୍ବୁପାଣି ସୁଶ୍ରଦ୍ଧରେ ନିପୁଂସ ଲକ୍ଷଣ ଧରେ
ସୁଧୃଷ୍ଟ ଦକ୍ଷିଣେ ନେବେ ଏହୁ ଦେହକ ।
କରି ଶନ୍ୟସ୍ତ ଦ୍ୱିଗୁଣ ଗୋପୀ ଗଣରେ ଦକ୍ଷିଣ
ଭାବେ ଥୋଇ ଏ ବାଳାରେ ହେବେ ମୋହକ
କମନୀୟ କାହିଁ ତୁଲକ ।
କହିବାକୁ ନାମେ ନାହିଁ ବ୍ରହ୍ମାଣ୍ଡେ ଏକ । ୧୮ ।

କରୁଣାବ୍ଦ ଜନମାଇ ରସା ରୂପା ହେବା ପାଇଁ
ଚନ୍ଦ୍ରଭାନୁ ଯୋଗୁଁ ହେବ ପ୍ରଭା ଦୀପ୍ତକ ।
କଳାପ ମୀନକୁ ମିଳି କୁମୁଦ ପ୍ରକାଶ ଭଳି
ଚନ୍ଦ୍ରାବଳୀ ନାମ ହେଲା ଲେଖୁଁ ଜାତକ ।
କଲେ ଯେଉଁମାନେ ବିଲୋକ ।
କେଁ ନ ରହିଲା ତାଙ୍କ ନେତ୍ରେ ପଲକ । ୧୯ ।

କଳ କହ୍ଲାର କୃତ୍ରିମ ପୁଷ୍କରିକାସାର ପ୍ରତିମ
ବାଲ୍ଲ ଲୀଳାରେ ହୋଇଲା ପ୍ରତିପଦକ ।

କନ୍ୟା କଥା ବୀତ ସତ                    ପୌଗଣ୍ଡ କୁଉଁ ପ୍ରତୀତ
ପାର୍ବତୀ ଶୋଭାକୁ ଏ କରିବ ଲକ୍ଷକ ।
କନ୍ଦର୍ପ ବିଶିଖେ କାର୍ମୁକ ।
କଲରୁଁ ବୃଷ୍ଟି ହେବ ପାର୍ବତୀ ମାତୃକ । ୨୦ ।

କଣ୍ଢାଇ ଖେଳରୁ ମିଳ                    ପଦ୍ମା ଶୈବ୍ୟା ପ୍ରିୟ ଆଳୀ
ଗୋବର୍ଦ୍ଧନ ମଣ୍ଡଳେ ଦାନକୃତ ଜନକ ।
କଣ୍ଠ ଯାର ଦଶ ତାର                    ପୁରରେ ଥିଲା ପ୍ରକାର
ଜାନକୀ ଆନକ ସମ ଗୌରୀ ମଣିକ ।
କର୍ଦ୍ଦମେ ପତନ ସାମ୍ୟକ ।
କହେ ଉପଇନ୍ଦ୍ର ଶିବେ ସେ ଉପାସିକ । ୨ ।



## ତୃତୀୟ ଛାନ୍ଦ

ରାଗ — କଉଶିକୀ

କଈଶରୀ ପଦ କରି ଆସପଦ ଶୋଭାମଞ୍ଜରୀ ଉପାଧିକ ।
କରପେ ସେ ନବ-ପୁଷ୍ପବତୀ ଭାବ ବିଶେଷ ସୁରଭି ବୃଦ୍ଧିକ ।
କରି ହେ ଅଳି । ଧୂନି ହୁଳହୁଳି ଗମକ !
କପାଳଭୂତହିଁ ଶୁଣିଲେ ମଣାନ୍ତେ କାମଗୁଣ ଘୋଷ ଦମକ । ।
କବି ବଚନେ ରଚନେ ପଡ଼ିଗଲା ଉପମାବୃନ୍ଦର ଚମକ ।
କଠୋର ରମ୍ଭା ଦମ ଦମ ଆରମ୍ଭା ହେବ ବଳ ଚମଚମକ ।
କହି ହେବ ସେ । ଶଚୀ ଆଗେ ଏହି ପଦକ ।
କମଳ ସୁନ୍ଦରୀ ପୁରନ୍ଦରୀ ଶଙ୍ଖୀ ଚନ୍ଦ୍ରାବଳୀରେ ସମ୍ପାଦକ ।୨।

କଲ୍ଲୋଳେ ଲୋକେ କାଳନ୍ଦୀ ଓଳଗିଲ୍ କେଶେ କ ସଦୃଶ ଦେବାକ
କଣ୍ଠାଗ୍ନି ଜନ ଦେବେଶ ନନ୍ଦି ଅଲକ୍ଷ୍ୟ ଚନ୍ଦ୍ରେ ଗ୍ରହ ଭିନ୍ନ ନାୟକ ।
କରୁ ପ୍ରଶଂସା । କରେ ଏ ରୂପେ ବିପାକ ।
କଳାପ ଗୃମର ଗ୍ରହସୀର ଘର ଚଳେ ନେଲେ ସମତୁଳ୍ଛକ ।୩।
କବରୀରେ କରେ ସଖୀ ପୁଷ୍ପ ଧୂପେ ଜଳଦ ପରେ ଅଭିଷେକ ।
କରାଇ ବିନ୍ଦୁ ତୀକ୍ଷ୍ଣ ବୃନ୍ଦବକପାଳିକ କରାଇ ସେବକ ।
କଉଶିକର । କୋଦଣ୍ଡ ଉଦୟ ଦଣ୍ଡକ ।
କରନ୍ତେ ଆରତେ ଶବଦ ବିଷାଦେ ଶରଦେବେଶ ଖଣ୍ଡଖଣ୍ଡକ ।୪।
କମଳଲପନେ ହାରେ ପଦ ଧରି ଭୃଙ୍ଗ କରେ ସ୍ତୁତ ପାଠକ ।
କଳଙ୍କୀଚନ୍ଦ୍ର ତୋ ମୁଖ ଅସମେ ପଦ୍ମ ନା କରେ ଅବଲୋକ
କଳାଶଶୀ ସେ । ଗୁରୁ ପର ରତ ରତକ ।
କରନେ ହାସେ କାହିଁ ସ୍ଥାନ ନ ଦିଏ ସମନେ କହୁଛି ଏତେକ
କରାଇଲା ଲଖି ଭ୍ରୂରୁ ଉଲ୍ଲାସେ ଏ ଆଗୁଁ ଭଙ୍ଗାଇଛି ପିନାକ ।
କଙ୍କପତ୍ରରୁ ଆଘାତରୁ ଛଡ଼ାଇ ଅପାଙ୍ଗ ଘେନେ ଏ ଗୁଣକ ।
ଲକ୍ଷା ଏ ଅତ— । ବିନା ମରମରେ ଭେଦକ ।
କହିବା ତହିଁକ ନେତ୍ରର ମୃତୁରୀ ଅଣିବାର କ୍ଷଣକ୍ଷଣକ ।୬।
କଦଳୀ ବଳ ଖଞ୍ଜନ କରି ଜରି ଚଅଁଲେ ବନେ ନଟବେଶକ ।
କରଣୀ ଏହି ସାରଣୀ ଖେଳ ଢାଳି ଢାଳିବାରେ ଲେଶ ଲେଶକ
କରାଇଲା ସେ । ମୀନମାନଙ୍କୁ ଅପଳକ ।
କଜ୍ଜ୍ୱଳ ମହାଉଜ୍ଜ୍ୱଳକାରୀ ହୋଇ ବଡ଼ଶୀ ପରି ଦେଇ ଦକ ।୭।
କପାଳ ଊର୍ଦ୍ଧ୍ୱେ ଝିଲିମିଲି ରଖିଲା ଠାରି ଏହିମତ ପଲକ ।
କମଟିତା ଘେନି ସିନ୍ଦୂର ମଣ୍ଡଳେ ସେହି ସୁବା ଧୈର୍ଯ୍ୟ କାଳକ ।
କହି ବିଅର୍ଥ । ଉତ୍ଫୁଲ୍ଲ ନାସାକୁହିଁ ଦୃକ ।
କରୁ ମୋତ ଗୁରୁ ବର୍ତ୍ତି ଆସି ଗୁରୁ କ ଭ୍ରମ ତେଜିନାହିଁ ନାକ ।୮

କର୍ଣ୍ଣଫୁଲ ଛନ୍ଦ ଧରାଇ ହୋଇ ଯେ ଖଣ୍ଠ ଦୋଳି ପାଶ ଜିତଙ୍କ ।
କର୍ତ୍ତ୍ରୀ ଚୂର୍ଣ୍ଣଚ୍ଛେଦେ ମତ୍ତ ଦମ୍ଭବ୍ରଜ ମଲ୍ଲିକଢ଼ୀ ଛକ ଅଙ୍ଗ ।
କର୍ଣ୍ଣାବତଂଶ । ସୁମନାରେ ଏହି ଭାବୁକ ।
କହି ହୁଏ କ ସୁମନାଗଣେ ମୁହିଁ ଅବତଂଶ ରୂପେ ଗର୍ବିକ ।୯।
କରୁଥିଲେ ରଣ ଅରୁଣ ଅରୁଣ ଅଧରାଙ୍କ ଗ୍ଲର ବଧୂକ ।
କବଳେ ତାମ୍ବୂଳ ବ୍ୟାଜ ଘେନିବାରେ ପାତହତ ଦଶେ ଫଳକ
କଳ୍ପିବାରେ ଯେ । ସିଦ୍ଧ ହୋଇ ଏ ଭାରତକ ।
କଳେ ପୂରି ପାନଗଣ୍ଡେ ପ୍ରତିବିମ୍ବ ନାଗରଙ୍ଗ ରଙ୍ଗ ଅନ୍ତକ ।୧୦।
କନ୍ଦର୍ପ ଲଜ୍ଜେ ଦ୍ୱିଜେ ହାରି ଚନ୍ଦ୍ରାଇ ହୋଇହାର ହେଲ ମୌକ୍ତିକ
କରୁଣାରେ ବାରେ ପଲେ ପଚୂଇ କ ଶାଳ ଶାଳ କଲ କରକ ।
କସ୍ତୁରିକାର । ଚୋପି କରି ଧରି ଚିବୁକ ।
କବ୍ରୁର ଅଳକାଶ୍ରେଣୀ ଧୂମ ହେଲ ଡେଣୁ ବର୍ତ୍ତି ମଧୁକରକ ।୧୧।
କଲନାହିଁ ସାତ ବାତ ସାତସ୍ୱର ଧ୍ୱଣିବୀଣା ବାଣୀ ପ୍ରାପ୍ତେକ ।
କରପୀଡ଼ାରେ ପରବଶେ ବାଜଇ ସ୍ୱରେ ସିନା ଧରେ କ ପିକ ।
କରେ ପ୍ରକାଶ । ସୁହାସ ଅଳ୍ପକ ଅଳ୍ପକ ।
କର୍ପୂର ଗୁଣ୍ଡିରେ ଠିକ ଠିକ ଇଚ୍ଛି ଦେଖାଇ କୃପଣ ଛଳକ । ୧୨।
କଣ୍ଠେ ହରଇ କୁନ୍ଦିହେଲ କମ୍ବୁକୁ ପାଞ୍ଚିକଲ ମାଳାଧାରିକ ।
କପୋତକୁ ପାଶେ ପକାନ୍ତ ଏ ବାଧି ଲକ୍ଷ୍ୟହେଲେ ଅହଂକାରିକ ।
କରୀକରେ ଯେ । କର ସାମ୍ୟ ହୋଇ ଚିହ୍ନକ ।
କର ପାଦନ୍ୟାସେ ପଶି ଯେ ଗମନ ମନ୍ଥରେ ହୋଇଲ ମନ୍ଥକ ।୧୩
କହିଲ ନ କହିଲ ଯାହା ଅତୁଲ୍ୟ ଏହିକ ହୋଇଲ ଖଞ୍ଜକ ।
କଣ୍ଠକାଳ ଦୃଷ୍ଟି ଭୁଜରେ ତାଡ଼ନ ତାଡ଼ରେ ବୁଡ଼ାଇ ଉଦକ ।
କଳାକେଳିରେ । କଳିକାବନ୍ତ ସୂଚମ୍ବକ ।
କରାଙ୍ଗୁଳିରେ ସେ ମୁଦ୍ରା ନ ଦେଲଟି ମୁଦିଲ ମୁଦ ସେମାନଙ୍କ ।୧୪

କଠିନସ୍ତନ ଯୌବନ ବୃଦ୍ଧି କଲା ଗଢ଼ିଲା ପର ପ୍ରାସାଦକ ।
କଣ୍ଠକରେ କଳ୍ପବାଣୀ ପଦବ୍ୟାଧି କକୁଷ୍ଠିତ କୃଶକଟିକ ।
କରିଛି ଧାତା । ନ ସିବାକୁ ପୁଣି ଏ ସକ ।
କବ୍ରି ପେଲଗାଇଁ କୁମ୍ଭକୁ ଦୃଷ୍ଟି ଏ ଆଗୁଁ ହୋଇ କୁଣ୍ଡଘାତକ ।
କଳାବସନେ ସ୍ୱର୍ଣ୍ଣଜରି କାଞ୍ଚିଲା ଘେନ ଅଞ୍ଚଳ ପିଧାନକ ।
କଣ୍ଠଳ ମୁଥିଳ ଗୋପ୍ୟ ନୋହିବାରୁ ମଧମ ମଧମେ ଛନ୍ନକ ।
କଣମନ୍ଦକ । ହେଉଁ ତହିଁ ନେବ ପାତକ ।
କହେ ସଜନୀ ମନଜାଣି ଚତୁରୀମଣି ଏତେକ ନ ତରକ ।୧୬।
କପାଳବାଳୀ ସୁନ୍ଦର ପଣେ ଜିଣି ଗଉରୀ ପଦକୁ ଲୁଣ୍ଠକ ।
କଣ୍ଠି କରୀହରି କେଶରୀକ ଆଣି କଲୁଣି କଙ୍କିଣୀ ବନ୍ଧକ ।
କର୍ଣ୍ଣପତନେ । ଜାଣିଲା ହେଲା ବରଷକ ।
କହିଲା ଛଳକେ ସରିଅଛି ବୋଲି ଗୁଣ ଗଣତାକୁ ତୋଷକ ।୧୭।
କଳାଜାଣ ନାଗ କକ୍ଷପାତେ ନୀଳଦଣ୍ଡ ରୋମାବଳୀ ଦୃଶକ ।
କଲ୍ପ ଏ ଚିତ୍ତବଂଶୀ ଯେ ଜ୍ଞାନ ହରେ ଦର୍ଶନେ ତା ଜ୍ଞାନ ନାଶକ ।
କଦା ବାହାରେ । ସଦା ହେଲା ବଳବାହକ ।
କଥା ପ୍ରସଙ୍ଗ ବଳେ ଧରି ଆଣିଲେ ପଞ୍ଚୀକେ ସ୍ଥିର ଚିନ୍ତସକ ।୧୮
କଳିତ ତ୍ରିବଳି ତ୍ରିବାରେ ଉଦର ସମନାହିଁ ବୋଲି ତ୍ରିଲୋକ ।
କରଶାଖା ଅନାମିକାରେ ରହଇ କୁଶମୁଦ୍ରା ନାଭିଉପୁକ ।
କଲା ଲୋକନ । ସ୍ନାନେ ଚଳେ ଫୁଟି ବିବେକ ।
କମଠ ତାକେ ପଡ଼ି ମୁଖ ଲୁଚାଇ କଘନେ ହୋଇ ଆକ୍ଷେପକ ॥
କରଭତାର ସ୍ୱରୁ ଉରୁ ବହିଲା ଯେଣୁ ତାକୁ ସେହି ତୁଲ୍ୟକ ।
କଦଳୀ କଦଳ ଅର୍ଗଳ ଅର୍ଗଳୀ ସିଦ୍ଧକଲା ଏହି ବାଣିକ ।
କଳସୀ ଭଲ । କରି ଯଉବନ ତନ୍ଦ୍ରକ ।
କର ଥରନ୍ତା ବିଧାତା ହେଲେ କୁନ୍ଦ ସୃହିଁ ଏତେ ମହୋତ୍କୁଳକ ॥

କଷଠି ପାଷାଣେ କଷି ହେଉ ନହିଁ କାନ୍ତସମ ନୋହି କନକ ।
କରଣେ ଭୂଷଣ ଧରିବ ନଉନ ଛବି ପ୍ରହାରନ୍ତ ବଣିକ ।
କର୍କ ପକାନ୍ତ । ପୋଡ଼ିଯାଉ ଏ ସନ୍ତାପକ ।
କଣ୍ଟଦଳୋଦରେ ନ ପଡ଼ନ୍ତ କମା ନପାରେ କେତକୀ କେତକ ॥
କସ୍ତୁରୀହାରି ବାସକୁ କୃତ୍ତିବାସ ନତମ୍ବେ ରଜିତ କୂପକ ।
କେବଣ ଲକ୍ଷ୍ୟ ତହୁଁ ଭଲ ସବଙ୍କ ସୁତହେଲେ ମାଳଜପକ ।
କରୁଥିବେ ସେ । ଧ୍ରୁବପଦ ଏହି ପଦକ ।
କଳାବତୀ ମନୋରମ ପାଉ ନହିଁ ଚରମ ତୁମ୍ଭଙ୍କ ମର୍ଦ୍ଦକ । ୨୨ ।
କମଳା ନିର୍ମଳା ନବାବୟ୍ବ ସେ କୋମଳେ ଲବଣୀ ହିଂସ୍ରକ ।
କରେ ଆପଣେ ବୈଶାଖରେ ମନ୍ଥନ ହୋଇ ଅଷ୍ଟସଖୀ ଯୂଥକ ।
କରି ଶ୍ରୁତକ । ଗୀତେ ପଞ୍ଜରୀ ଶୁକ ମୂକ ।
କଣ୍ଟକ ପୁରେ ଦେହଳି ଦଳିବାର ମୂଖରବେ ପ୍ରତିପାଳକ । ୨୩ ।
କମଳଧରଜା ସ୍ନାନେ ବଧୂ ମଜା ଶୈବ୍ୟା ମଣାଇଲେ ଧନକ ।
କଲ୍ୟାଣୀ ଘେନି ରଜନୀ ଥାଉଁ ଯାଇ ଆଗସରି, କୈଳକୁରୁକ ।
କରୁଁ ସମ୍ମତ । ଧନେ କାଳନ୍ଦୀ ବିହରକ ।
କହେ ଉପଇନ୍ଦ୍ର ଏ ଗୀତ ପଦାଦ୍ୟ ପ୍ରାନ୍ତରେ ଦେଇ ଅବନୀକ ॥

—✻—

## ଚତୁର୍ଥ ଛାନ୍ଦ

( ରାଗ—ମାଳବ )

କମେ ହେଲା ଯେଉଁ ନଦୀକୂଳରେ ମିଳକ
କଟାକ୍ଷ ଭାଜକୁ ତହିଁ ନବୀନା ତିଳକ ଯେ ।୧।
କନହ ସେବାକାରୀ ଆଗେ ମୁଖକୁ ଦର୍ଶକ ।
କମଳ ନେତ୍ରକୁ ଗୃହୁଅଛି ପୁଣ୍ଡରୀକ ଯେ । ୨ ।

କର୍କସ୍ଥାନ ସତ ସମା ଏ ପ୍ରତିବାଦକ ।
କଟି କିଙ୍କିଣୀ ଫିଟି କି ବଳା ଇଙ୍ଗିତକ ଯେ । ୩ ।
କଳାହାସ ପଦ୍ମଜାତ ହେଲେ ସେ ନବାକ ।
କମଳେ ମକ୍କନ୍ତେ ଯାହିଁ ଭଦ୍ରା ପ୍ରସାରକ ଯେ । ୪ ।
କଦାଚିତେ ଘନରସ ଭାବି ଅତ୍ରୁଠକ ।
କହୁଅଛି ଏହୁ କରି ପରମ ରସିକ ଯେ । ୫ ।
କମଳିନୀକି ଏ କେ.ଳ କରଇ କାଳକ ।
କମଳିନୀ ତୋତେ ଏବେ ଏ କାଳକାରକ ଯେ । ୬ ।
କହିଲ କି କଥା ପାଳି ହୋଇଲା ଛଳକ ।
କନ୍ୟା ଏ ସୁନ୍ଦର କେହି ହୋଇବ ନାୟକ ଯେ । ୭ ।
କଇରବ ଭକ୍ଷୀ ଏହି ଘେନ ଆଶ୍ଳେଷକ ।
କହନ୍ତି ତାକୁ ଏହାକୁ ଭାନୁଜା ମୁଁ ଶ୍ଳୋକ ଯେ । ୮ ।
କନ୍ୟାର କରମେ ଯୋଗୀ ହୋଇ ବିକ୍ଷେପକ ।
କଟାକ୍ଷୀଲ ଭଙ୍ଗନ୍ତେ କରେ ହୋଇ ସମ୍ମତକ ଯେ । ୯ ।
କହେ ଗୁଣବନ୍ତି ପୂର୍ବେ ସେ ଭଙ୍ଗୀ ନାମକ ।
କବିଙ୍କ ଯଶ ଦଳିଛି ଯେଉଁ ଚମ୍ପାସ୍ତ୍ରକ ସେ । ୧୦ ।
କରେ ଧରି କୁବଳୟ ଫଳକୁ ଖୋଜକ ।
କହିତା ମୁକୁତା କାହିଁ କହେ ବିନାୟକ ଯେ । ୧୧ ।
କହୁଲାଲା ସମୁଦ୍ରର ଅଙ୍ଗୁଳି ବିଲେକ ।
କନ୍ୟାରନ୍ତୁ ହୁଅଇ ମୋକ୍ଷକୁ ପ୍ରକାଶକ ଯେ । ୧୨ ।
କଚ୍ଛପ ମୀନ ନଳିନ ଶଙ୍ଖବାଳକୋକ ।
କରିବାରେ କଳିବାରେ ହେଲେ ସେ ଭୀତକ ଯେ ।୧୩।
କଇବର୍ତ୍ତି ପରି କେହି ଆରୋହୀ ଭେଳକ ।
କହଇ ପାରି କରିବା କେତେ ବର୍ଣ୍ଣକ ଯେ । ୧୪ ।

କଠୋର ହସ୍ତ ଏ ତହିଁ ଏମନ୍ତ କଥକ ।
କବନ୍ଧା ଯୁପାର ଯେତେ ନଅ ଗୋ ତେତେକ ହେ ।୧୫
କଲ ଖଡ୍ଗୁବାହି ଫିଙ୍ଗା ଫିଙ୍ଗିରେ ଉଦକ ।
କଣ କଣ ଧ୍ୱନକ ହୁଅନ୍ତା ପ୍ରସାରକ ହେ । ୧୬ ।
କମଳ ବିନା ବନ୍ଧୂଏତ ନୀରସେ ସଞ୍ଚକ ।
କଳାପୀ ସନାଦ ଚେକ କୁନ୍ତଳ ଚମକ ଯେ । ୧୭ ।
କରଣେ ଯୁବା ଉତ୍ପାଟ ଚିହ୍ନ ପ୍ରାବୃଟକ ।
କମଳାପତ ଦୁହିନୀ ହୃଦେ ଉଦଯୁକ ହେ । ୧୮ ।
କଥନୀୟ ନୁହଇ ତା କହିବା କେତେକ ।
କଥା ପରସ୍ପରେ ବେଗେ ଯିବାରେ ଉତ୍ସୁକ ହେ । ୧୯ ।
କଉଶଲ୍ୟାସୁତ ପାଦେ ଚିତ୍ତ ନିମଗ୍ନକ ।
କହେ ଉପଇନ୍ଦ୍ର ଭଞ୍ଜ କଳା କଉତୁକ ହେ । ୨୦ ।

—୦—

## ପଞ୍ଚମ ଛାନ୍ଦ

(ରାଗ—କଲ୍ୟାଣ ଆହାରୀ)

କଳିନ୍ଦସୁତାରୁ ବାହାର ସେ ରମା ନାହିଁ ଯା ସମକାହିଁ ଏକ ।
କମଳ ଉତ୍ପତ୍ତି ଜଳଧରୁ ଯଥା ଏତେ ଅଛି ଚିତ୍ତ ଭ୍ରାମ୍ୟକ ।
କମଳ-,ବାସୀ ପଦ ଉପପମକ ।
କଚ୍ଛ ଅଚ୍ଛକେତେ ଶ୍ଳେଷ ଆଶ୍ଳେଷରେ ପ୍ରକାଶେ ଉତ୍ପେକ୍ଷା ରୂପକ ।
କଦମ୍ବ ପରି ଗୃରୁ ଉରୁ କୂଳସ୍ତେ ପ୍ରଖ୍ୟାତ ସାନୁ ସପୁଲକ ।
କର୍ଣ୍ଣି ଛବି କୁଚଯୁଗ ଅପଘନ ଜଳସ୍ରବ ମଧୁ ଦ୍ରବକ ।
କରୁଣା,-ସିନ୍ଧୁରୁ ହୋଇଲା ଦର୍ଶକ ।
କରଟ ରଟଛନ୍ଦେ ଦୁଷ୍ଟରଜାଙ୍କୁ ଭେଟ ଉଲ୍ଲାସେ ଦେଇ ଡାକ । ୨

କଇତବେ କୁଞ୍ଜେ ଆସି କୃଷ୍ଣତୁମ୍ଭହିଁ ନୋହି ଆନ ଅବଲମ୍ବକ ।
କର୍କଶ କୁଚଦ୍ୱୟ ମନ ଲୌହକୁ କାନ୍ତେ ହୁଁ ହୁଁ ହୋଇ ଚମ୍ବକ ।
କଲ୍ପ ସେ, ହୋଇ ଯେଉଁ ତପ ଲକ୍ଷକ ।
କଇବଲ୍ୟ ଜୁହୀ ପୁହୀ ଲୋଭ ଜଳେ ମୀନ କରି ତାକୁ ରକ୍ଷକ ।
କଉତୁକୀ ବାଳା ସ୍ତନ ପଞ୍ଜରୀରେ ପକାଇ ତୋଷେ ହରିଦୃକ ।
କଷ୍ଟାଠିନକୁ ଅଠାକାଠି ଯେମନଣ ନଳେ ଲଗାଇ ନେଇ ଠିକ ।
କର୍ତ୍ତବ୍ୟ. ନ ତେଜେ ଯଥା ନଳିଶକ ।
କଠୋର ଉରଜ ଲୋମ ଲତା ଯେନ୍ନ ସମ୍ବଳ ଦୃଷ୍ଟି ଅନେକ ।୪
କନକଗିରି ଯେନ ଶୃଙ୍ଗ ହେବ ଏ ଦୀନବନ୍ଧୁ ଭାବେ ଉତ୍ସୁକ ।
କର ମୋର ସଦା ତେଜି ନ ପାରିବ ପ୍ରମାଣ ଯେବେ ବିଶ୍ୱସ୍ତକ ।
କଦା ଏ-, କଥା ବୃଥା କ ବଳାହକ ।
କଳାପ ଊର୍ଦ୍ଧ୍ୱକୁ ଗମି ନ ପାରିଁଠେ କରିଛି ଅଧୋଭାଗେ ଓକ । ୫।
କଲ୍ପେ ଅଙ୍ଗଦେଶେ ଗଢ଼ା ନୂପ ଯେନ ସ୍ତବେ ମନରାଜ ରାଜକ ।
କମଠ ହୋଇ ପ୍ରକାଶ ହୋଇଛନ୍ତି ଭାବିନୀ ଅଳଙ୍କାର ନାକ ।
କରୁଣା, ଅଧିକାରୀ ଶୁଭସୂଚକ ।
କରିବେ ନାହିଁ ପ୍ରେମଧନ ଦାନ ମୁଁ ହୋଇଲେ ଏଥିରେ ଯାଚକ ।୬
କଳଧଉତ ବଲ୍ଲୀରେ ମଧୁକର ପନ୍ତି ମଧୁକୋଷ ସଞ୍ଚକ ।
କରନ୍ତି ବାହୁଡ଼ି ପଡ଼ି କବି କଳ୍ପ ରସ ମଧ୍ୟେ ମହାରୋଚକ ।
କଲେ ମୁଁ, ଭୋଗ ହେବ ଶୁଦ୍ଧଦେହକ ।
କରିଛି ଦେବାଧିଦେବ ପ୍ରତିଷ୍ଠାକୁ ଏ ଯେନ ଆଶା ଅତିରେକ ।୭
କରି ଏ ଯୌବନ କୁମ୍ଭରେ ଶୋଭନ ଲେଖନ୍ତି ବିଚିତ୍ର ଚିତ୍ରକ ।
କରି ବଢ଼ାଇଛି ନାଭି ପଲ୍ଲଲକୁ ପିଆନ୍ତି ସେନେହ ଉଦକ ।
କରନ୍ତା, କେମନ୍ତେ ଏଥି ହସ୍ତିପକ ।
କରଜ ଅଙ୍କୁଶ ଦିପ୍ତକୁ ଅନାଇ ହୋଇଥାନ୍ତା ଗତ ବ୍ୟାପକ ।୮।

କଳପ୍ରିୟପ୍ରବୀଣା କେ କେଳିପ୍ରବୀଣା ଗଜିତ ତୁମ୍ବୀ ପ୍ରବେଶକ ।
କରାଇ ଜାତ ହେବେ ରାଗ ଜେଦାରେ ହୃଦ ହେବେ ସୁଖ ସର୍ଜକ
କରଇ, ସ୍ୱର ନ ଥାଇ ଯେ ବଣିକ ।
କଣ୍ଠସ୍ପର୍ଶ କରି ଜଙ୍ଘାସନ ଦେଇ ମନ ନ ହେଜନ୍ତୁ ଆଶୁକ । ୯
କପାଳି ନେତ୍ରାନଳେ ଜ୍ୱଳି ମନରୁ ଜନ୍ମି ଶିଶୁଭାବେ ଦର୍ପକ ।
କଳା ପାଟସୂତ୍ର ମଞ୍ଜୁ ରଞ୍ଜୁ ବଳି କୁନ୍ଦାଇ ଅମୂଲ୍ୟ କନ୍ଦୁକ ।
କମଳା, ଉପରେ ରଖି ଢାଙ୍କି ଅଂଶୁକ ।
କଇଶୃଙ୍ଗ ମୁହିଁ ମୋତେ ଦେଲେ ସେହି ନୂଅନ୍ତା ଏ କାଳବଞ୍ଚକ
କଳ୍ପନା କାମ ଅଛି ତଳେ ଏ ପ୍ରେମରତନ ପୂର୍ଣ୍ଣ ସମ୍ପୁଟକ ।
କହିବେ ସେହି କୁନ୍ଦେ କାହିଁ ଯେବଳି କରି ନ ଥିବେ ଅବଲୋକ
କପଟେ, ନୂଅନ୍ତୁ ଅବା ଚଉରିକ ।
କଟୀଗତ ସିଦ୍ଧି ନ କରି କଲ୍ପନା ହୃଦପୁରୁଁ ଶ୍ରେଣୀ ବାବେକ । ୧୧
କଳ୍ପତରୁରେ ନଷ୍ଟେ ହରିଚନ୍ଦନ ସୁହାସୀ ଫଳ ଦୂଶ ଧୂକ ।
କଳ୍ପି ସେ ତରୁ ପସ୍ୱାନ୍ତର ତନଙ୍କି ନେ କାଳ ଦଳଶୂକ ମୂକ ।
କରଣେ, ରଞ୍ଜକ ଗମନ କାରକ ।
କଣ୍ଠ ଏ ଫଳ ଲଭିଲ ତଳେ ରହି ହେଲେ ହେବ ସୂରନାୟକ
କପର୍ଦ୍ଦି ବହ ହା ମନ ଶମ୍ଭୁରୂପେ କୁଙ୍କୁମ ଭୂମିରେ ଦୀପକ ।
କସ୍ତୁରୀ ଧର ବହାଇ କରିଥିଲେ ମନ କ ଅବା ଅଭିଷେକ ।
କମଳ-ମ ଳରେ ହେଲେ ମୁଁ ପୂଜକ ।
କଳୁଷ ମ ରି ପତ୍ନୀ ମୋର ନୂଅନ୍ତା ହୁଅନ୍ତେ ଏ ବରଦାୟକ ।୧୩
କଳା ଲଳସୀ ଅଦ୍ଭୁତ ରସନଦୀ ଅପାଙ୍ଗ ତରଙ୍ଗ ଧାରକ ।
କବଳ ଆଶେ ଶୈବାଳ ଲତା ପାଶେ ସ୍ଥିତ ମିଥୁନ ଚକ୍ରବାକ ।
କଳୁଷ,—ବଂଶୀ ଶାପ ନୋହେ ଘାତକ ।
କରନ୍ତେ ମଜ୍ଜନ ସନ୍ତାପ ଜ୍ୱଳନ ଜୀବନ୍ତେ ନୋହିବ ଜାଳକ ।୧୪

କଟକ ଶୋଭିନୀ ଶୋଭା ନଗରୀ ଏ ନାଗରିମାନଙ୍କ ତିଳକ ।
କଉଷେୟ ପୀତ ଛନ୍ଦ ବୋଲି ଯୁଗ୍ମ ବୋଲି ବର୍ତ୍ତୁଳ ଦଣ୍ଡେ ଏକ
କଳଶେ, ବେନି ଉନ୍ନତରେ ଠାଣିକ ।
କଳରୁଁ ପ୍ରଧାନ ଚକ୍ରବର୍ତ୍ତୀ ହୋଇ ଯୁବାବୃନ୍ଦେ ଦେବା ମସ୍ତକ
କଳକଣ୍ଠ କଣ୍ଠୀ ଶୋଭନ୍ଦନ ଶଚୀ ଜିଣି ଦେଖାଇ ନାଟକ ।
କର୍ଣ୍ଣିରବ ପରେ ଉଲଟ ନିଶାଣ ଦୁଇ ଥୋଇଣ ବାନା ଏକ ।
କରଣୀ, ଭଲ ଲମ୍ବାଇଛି ଏତେକ ।
କନ୍ଦର୍ପେ ଉଗ୍ରନ୍ତ ତାଡ଼ନ ପୀଡନ୍ତେ କରନ୍ତା ଯେବେ ବାଦର୍ନିକ ।
କଳକଣ୍ଠିନୀ ଅଶୋକ ତରୁପ୍ରସ୍ତ ଉଦୟ ଉଭୟ ସ୍ତବକ ।
କଲ ନିଦର୍ଶନେ ପାଣି ପରଶରେ ସର୍ବଦା କରିବନି ଶୋକ ।
କଲୁଷ, ନାହିଁ ସୀତା ସ୍ମୃତି ଆଶ୍ରିକ ।
କଳବାହ୍ନନ ମଧୁପାନ ଆଶରେ ଆସନ୍ତେ ବୃନ୍ଦେ ଚଞ୍ଚରିକ । ୧୭ ।
କରାକ୍ଷ ଦ୍ବନ୍ଦ୍ବ ସୁଧାରନ୍ତେ ଯେ ଦୈତ୍ୟେ ଏବେ ଦଇତେଅଧର୍ଷକ
କଳିତ କରି କାଳଦଣ୍ଡେ ହରିତ ହରିପରିରେ ଜାଗରୁକ ।
କତଣେ, ବେଗ ହୋଇବ ଉପାୟକ ।
କଲେବର ଶିର ଭିନ୍ନ ହୋଇ ପଡ଼ୁଛି ରହି କାହିଁ ସାହୁ ପ୍ରଯୁକ ।
କଦଳୀ ଉରୁ ଅନୁକୂଳ କରି କ ଜଗକ୍ଷୟରେ ସଂକଳ୍ପକ ।
କର୍କ ବେନି ସ୍ଥାପି ତମାଲ ତୋରଣ ଲମ୍ବାଇ ପକ୍ଷ ସାମସ୍ତକ ।
କଟକ, କର୍କ ଏ ମୋର ସରମ୍ଭକ ।
କରିବାର ହିମ ଭେଟୁଁ ହରେ ତେଜି ହେଲ ଲଭ ଏହି କାମୁକ ।
କଲୁକେ ନୁହନ୍ତା ଏ ପ୍ରାସାଦ ବେନି କଲ ବକ୍ଷ ସନ୍ଧି ତଟକ ।
କଳୀନ୍ଦ୍ର-ବାହନ-ମଣିରେ ନିର୍ମାଣ କରିଛି ପୁଣି ପାବକ୍ଷକ ।
କଥାରେ, ନେତ୍ର ମନ ହେଲ ପଥିକ ।
କପାଳ ଲିଖନ ବଖାଣେ ପ୍ରଶଂସା କରିବି ମୁଁ ହେଲା ମେଳକ ।

କମନୀୟପୁରୀ ଏ ଅବନୀ ଶିରୀ ନଟେଶ୍ବ ମହୀଇନ୍ଦ୍ର ଜାଲିକ ।
କଳ୍ପଲଗଁ ନାହିଁ ଦୂର ସଙ୍ଗ ତାହିଁ ଦିଶେ ଆଗଠୁଲ ଲୁଳକ ।
କମଳା, ଶ୍ରୀମଳା ଲିଙ୍ଗଳ ରୁଚକ ।
କଠୋର ଠୋପର ତାଳ କଣ୍ଟକଳୀ ହୋଇ ଦିଶିପାଇ ଏତେକ ।
କଳେବର ପୁଣି ଅଞ୍ଜନ ସାକ୍ଷାତ ଏହି ନାନା ବର୍ଦ୍ଧବହକ ।
କଳା ଜରୀ ଧାଡ଼ି ପିପିଲିକା ଶ୍ରେଣୀ ନୀଳା ମାର ଭେଳା ଭୁଳକ ।
କଣ୍ଠନା, ମହାକ୍ଷକୁ ଦେବ ହତକ ।
କଳ୍ପନ ମୋଠାରୁ ଘେନିଅଛି ଦେହି ନୋହିବ ତାର ପ୍ରବର୍ତ୍ତିକ ।
କରୁ ଏ ବପୁର ସୁନ୍ଦପଷ ଥିବେ ବଧୁତୋଷ କଳା ବର୍ଦ୍ଧକ ।
କତ ଖୋସୁଁ ଝିଁନଶାଢ଼ୀ ପିନ୍ଧିସାରି ପ୍ରକାଶେ ବିଶେଷିତ ଠେକ ।
କଠିନ, ସ୍ତନ ଶ୍ରେମାଳ ବିଭ୍ରାଜକ ।
କମଣ ଭ୍ରୂରୁ ନିର୍ମାଣ ଯୁଗ୍ମ ତନ୍ତୁ କଳ ରଜ୍ଜୁ ଏ ସଂଯୋଜକ ।୨୩।
କଜ୍ଜ୍ୱଳ ସିନ୍ଦୂର ଘେନ ଶେଷ କଲ୍ପ ଚଞ୍ଚଳ ନୟନ ତାଳକ ।
କଳହଂସ ଗତ ସଙ୍ଗିନୀ ସଙ୍ଗରେ ରଙ୍ଗରେ ବାଳା ପ୍ରଚୁରକ ।
କରୁଣା, କରିବାରେ ନବଘନକ ।
କବିତ୍ୱ ଆବେଶେ ଉପଇନ୍ଦ୍ର ଭଞ୍ଜ ଶ୍ରୀକୃଷ୍ଣ ଚରିତ ବର୍ଣ୍ଣକ । ୨୪ ।

—

## ଷଷ୍ଠ ଛାନ୍ଦ

(ରାଗ—କୁମ୍ଭକାମୋଦୀ)

କମନୀୟ ପୁରନ୍ଦରୀ ଚଳେ ଘେନି ସଙ୍ଗିନୀ ପୁଳକ ।
କଳଧଉତ ମଞ୍ଜରୀ କଳ କରି କ ଧାତା ଗୁଳକ । ୧ ।
କଳିକା ପ୍ରଫୁଲ୍ଲ ହୋଇଛନ୍ତି ଫୁଲ ମଞ୍ଜୁଳ ହରିକ ।
କଅଁଳପତ୍ର ପ୍ରବାଳରେ ଚଳିତ ଫଳହିଁ ମାଣିକ୍ୟ । ୨ ।

କଳାପ ଶିଖେ ବସିଛି ଅତି ସୁଖେ ମାରଗ ନାୟକ ।
କଥା କହୁଅଛି ଗୁପତ ହୋଇଛି ନ ଜାଣି କ ପିକ ।୩।
କରାଉଛି ପୁଣି ପକ୍ଷ୍ମଣୀ ପଦବୀ ସେ ରମା ସାର୍ଥକ ।
କବଣେ ଚଳେ ପଦବି ଶୋଭା କରେ ଏ ତ ସ୍ୱରୂପକ ।୪
କଟୀଗତ ତୋଳି ପାଦପଦ୍ମ ଧରି କ ପଦ୍ମ ନାମକ ।
କହନ୍ତ୍ର ହଂସ ଶିରେ ଧରେ ମିଳିତା ଭାବରୁ ହଂସକ ।୫।
କଉମୋଦକୀ ଧର ଏ ପାଇଁ ହେଲା କଲି ମୁଁ ବିଲୋକ ।
କନ୍ଦରି ଦୁହିଙ୍କି ତୃଣାଙ୍କୁରେ ଠେକ ଏ ବଡ଼ ଚିହ୍ନକ ।୬।
କଣ୍ଟକହୀନ କେତକୀ ଭୃଙ୍ଗେ ହେବା ନୋହିବା ଯୁତକ ।
କର୍ମେ କବା ଥିବ ଜଣାପିବ ହେଉ ସେ ଦୃଷ୍ଟିପାତକ ।୭।
କର୍ମ କରାଇ ତକାଳ ବେଗେ ଅବା ଜନ୍ମାନ୍ତ ପାଶକ ।
କଳେବରକୁ ଗଙ୍ଗାସିନ୍ଧୁ ସଙ୍ଗମେ ହୋଇବି ବାସକ ।୮।
କଲ୍ମଷୁ ଛିଁ କରିଛି ଜନ୍ମାନ୍ତେ ତହିଁ କ ପଡ଼ିଲା ଅମ୍ବକ ।
କନଡ଼ା ଘୁଡ଼ି ମଙ୍ଗଳ ରଗରେ ତ ସେ ବେଣୁବାଦକ ।୯
କର୍ଣ୍ଣଗତେ ପଶେ ସେ ସ୍ୱର ପରଶେ ହୋଇ ସେ ପୁଲକ ।
କଲି ସିଂହାବଲୋକନ ଗୃହୁ ସଖୀ ତରୁଣୀ ତିଳକ ।୧୦।
କଲୁଷ ମନ ମନାଇ ନେଇଥିଲା ମୋ ମନ ଗୃତକ ।
କଲି ଭାବନ ସେ ଶ୍ୟାମଘନ ହେବ କ ରସ ଜାତକ ।୧୧।
ଓଦନ ସଦନ କୃଷ୍ଣହୃଦେ ଚତୁଷ୍ପାଦେ ସମ୍ପାଦତ ।
ଜଳାନିଧି ମନେ ଆଣି ଅତଘନେ ଥୋଇଲା ପାଦକ ।୧୨।
ଏଦର୍ଥେ ଅତି ମନ୍ଥରେ ଯାଇଁ ବାଳା ସ୍ୱପୁରେ ପଠକ ।
ହେରେ ଛନ ଛନ ମନ ଯଥା ଧନ ଠକିଲା କ ଠକ ।୧୩।
କରି ନ ପାରି ସମ୍ଭାର ଉତ୍କଣ୍ଠାକୁ ସେ ବାରେ ପୁଚ୍ଛକ ।
କହି ମିତ କେ ସେ ମଣ୍ଡିଥିଲା କେଶେ ସେ ଶିଖିଚନ୍ଦ୍ରକ ।୧୪

କଠାଉନୂଥେ ଚରଣେ ଦେଇଥିଲ୍ଲ ହସ୍ତରେ ବେତ୍ରକ ।
କହ ମିତ କେ ସେ ପିନ୍ଧିଥିଲ୍ଲ ଯେ ସେ ହରିତ ଅଂଶୁକ । ୧୫ ।
କବିଭ୍ରାନ୍ତରେ ମୋତିଏ କରିଅଛି ନାସାରେ ସୁନ୍ଦରକ ।
କହ ମିତ କେ ସେ ଢଳ ଢଳ ଆସେ ଯେମନ୍ତ ନର୍ତ୍ତକ । ୧୬ ।
କଣ୍ଠେ ଲଗାଇଛି ରୁଞ୍ଜ ଗୁଞ୍ଜମାଳା ବକ୍ଷେ ଆନ୍ଦୋଳକ ।
କହ ମିତ କେସେ ମୃଦୁ ମୃଦୁ ଘୋଷେ ବେଣୁ ସୁଘୋଷକ । ୧୭ ।
କନ୍ଦର୍ପ ଏବେ ତନୁବନ୍ତ ହେଲ୍ଲନି ମୋ ଏହି ବିବେକ ।
କହ ମିତ ସେ ଯେ ଅଛି ଏ ବରଜେ ନନ୍ଦ ଯା ଜନକ । ୧୮ ।
କରି କି ପ୍ରତି ମତ ଭାଷେ ନାହିଁତ ନବୀନା ଲଜ୍ଜକ ।
କହଇ ଆଳୀ ଅନଳେ ନ ଢଳେ ରହିବ ଜତୁକ । ୧୯ ।
କଥା ସେ ପଦ୍ମ ସଙ୍ଗେ ସଙ୍ଗଲ୍ଲ ଯେ ଦିନହିଁ କେତେକ ।
କହିଲେ ହରି ଚରିତ ଯେହି ଯେହି ଶ୍ରବଣ ଦାହକ । ୨୦ ।
କରଇ ବାହାର ପୁଷ୍ପ ତୋଳିବାକୁ ବନକୁ ଦିନେକ ।
କହେ ଉପଇନ୍ଦ୍ର ଭଞ୍ଜ ଏଥୁଁ ରସ ଜନ୍ମିବ ଅନେକ । ୨୧ ।

—ଃ✱ଃ—

## ସପ୍ତମ ଛାନ୍ଦ

### ରାଗ—କଳହଂସ କେଦାର

କଦର୍ଥିତ ପ୍ରହାରୁଁ ତୀକ୍ଷ୍ଣ ଶାୟକ ।
କରି ମରମେ ଲକ୍ଷ ରତିନାୟକ ଯେ ।
କରି ପ୍ରାଣକୁ ମୃଗ ହୁଏ ଲୁବ୍ଧକ ।
କମଳନେତ୍ର ବସି ଏହି ଭାବୁକ ଯେ । ୧ ।

କଳି ଯାହା ଦର୍ଶନ ତାହା ଲଷକ ।
କଳଲେ ଅଛି ସେହି ବ୍ରହ୍ମାଣ୍ଡେ ଏକ ସେ ।
କଳ୍ପି ନାହିଁ ଯାହାକୁ ସେ ବଶ୍ୱସ୍ତୁକ ।
କଟର ଭାବନା କେହି ଏ ଏଡ଼େ ଠକ ସେ । ୨ ।
କଥନେ ସମନାହିଁ ବନସ୍ପ ବାକ ।
କହିବି ମୋହ ମନେ ଭାଚମ୍ପୂ କ୍ରକ ସେ ।
କଦା ଘେନ ହେଇଲେ ସେ କାରୁଣିକ ।
କଢ଼ାକରେ କଣିବି ଦିବ୍ୟମାଣିକ ସେ । ୩ ।
କହନ୍ତ୍ର ଜଉତପେ ଉଚ୍ଚ ଜାତକ ।
କଉଶିକେ କାଠିବ ପ୍ରଭୁ ସନ୍ତକ ସେ ।
କାରେ ଭରୁଁ ସ୍ନେହରେ ହେଲ୍ ତେତେକ ।
କଳି ସତ୍ୟ ହୋଇବ ସୁଖ ଜାତକ । ୪ ।
କନ୍ଦର୍ପ ଦର୍ପହତେ ହେବ କୁତୁକ ।
କଣ୍ଠଷ୍ଣିତ କରିବ ଜଇବାତ୍ନକ ସେ
କର୍ମଫଳରୁ ହେବ ମଧୁପିବକ ।
କଲ୍ପ ସେ ଥିବ ନାହିଁ ବ୍ୟକତେ ପିକ ସେ । ୫ ।
କମଳ ଫୁଟାଇବ ଗିରିମସ୍ତକ ।
କରଜୁଁ ହେବ ଅର୍ଦ୍ଧଚନ୍ଦ୍ର ପାତକ ସେ ।
କଳ୍ପମାନ କରିବ ଲବ ଲବକ
କମଳ ନାଳେ ହେବ ହସ୍ତୀବନ୍ଧକ ସେ । ୬ ।
କରିଛି ମୁଁ ସାହସ ଘେନ ଏତେକ ।
କର୍ପୂରୁଁ ଜାତ ହୁଏ ଯହିଁ ପାବକ ସେ ।
କର୍କଶ କୁଳିଶରୁ ଫୁଲଶାୟକ ।
କଣା ନୋହି ହୃଦୟସ୍ଥଳେ ଭେଦକ ସେ । ୭ ।

କରଇ ଲୀଳା ଏକ ହୋଇ ଅନେକ ।
କନକପୁଷ୍ପ ସେହିପରି ଗନ୍ଧକ ଯେ ।
କରଜେ କୁମ୍ଭଜର ସିନ୍ଧୁ ଉଦକ ।
କରିବାକୁ ବିଶ୍ରାମ ଅଛି ଅନେକ ହେ । ୮ ।
କଛୁ ନୁହଇ ହେ ଯାହାକୁ ବିଲୋକ
କମଳ ତାହା ତାହା ଭୋଗ ସଙ୍ଗକ ହେ ।
କଳାନିଧି ହୋଇ ଏଣିକ ଧାରକ ।
କଳାନିଧି ନ ନେବ ଏଣୀକି ଅଙ୍କ ହେ । ୯ ।
କରି ଚନ୍ଦନକୁ ଭୁଜଙ୍ଗ ବେଷ୍ଟନ ।
କନ୍ୟା ଚନ୍ଦନାଙ୍ଗୀ ମୋ ଭୁଜଙ୍ଗଠେକ ହେ ।
କମ୍ପନ ଊରୁ ବସିବାରେ ବାରକ ।
କରନ୍ତୁ ଉରୁବଶୀ ବାରେ ମୁଁ ଧିକ୍କ ହେ । ୧୦ ।
କବିପ୍ରାୟ ଏ ବିଧି ତନ ମନକ ।
କଣ୍ଠୁ ରଚି ଗଉଁ ଯଥା ଗାୟକ ହେ ।
କଣ୍ଠରେ ମଧୁମଙ୍ଗଳ ପ୍ରବେଶକ ।
କଲି ଶ୍ରବଣ ତାଙ୍କ ବଚନ ଯାକ ହେ । ୧୧ ।
କହି ହେ ଘନଶ୍ୟାମ ବର ରସିକ ।
କହି କେ ଗୋପେ ଅଛି ନୋହି ବଶକ ହେ ।
କହନ୍ତୁ ନ ଥିଲି ତ ମୋ ଅବଲୋକ ।
କମ୍ପମାନୁ ସ୍ଫଟିକ ଗର୍ଭେ ହୀରକ ହେ । ୧୨ ।
କହି ନୁହେଁ ନବୀନା ରତ୍ନ ପଦକ ।
କରିବାକୁ ଉତ୍ସାହା ଯତ୍ନପଦକ ହେ ।
କମ ନର୍ମାଣେ ଦିଶୁନାହିଁ ବଣିକ ।
କରଣେ ମୂଲ୍ୟ ଅମୂଲ୍ୟ ମୁଁ ଉତ୍ସୁକ ହେ । ୧୩ ।

କର୍ଣ୍ଣମଣ୍ଡଳେ ସୁଖ ମୁଁ ସମ୍ପାଦକ ।
କଠକ କୃତ ଘେନ ଶୋଭି ଉଠକ ଯେ
କଲ୍ ମର୍କତ ଆଭରଣ ଅଳକ ।
କରମେ ପଢ଼ିବନ୍ଦୀ ଲୋକ ଅମ୍ବକ । ୧୪ ।
କର ଦମ୍ଭକୁ ଦେଇ ଭୂତ ପ୍ରାୟେକ ।
କରନ୍ତି ସୁର ମନ କାଳକାଳକ ହେ ।
କଥିତ ଅଙ୍ଗ ଦେଶ ରାଜଦର୍ପକ ।
କଣ୍ଠାମ୍ଭେ ଅନୁସରଣକୁ ରଚକ ସେ । ୧୫ ।
କାଳକରରେ ରଜାପଦ ରାଜକ ।
କଳସ ଅଳସ ହାସେକ ସେବକ ହେ ।
କମ୍ବୁ ବାଣୀ ବିନୟ ପରିପୁଷ୍ଟକ ।
କରୁଛି ଅନୁମାନ ଏତେମାତ୍ରକ ହେ । ୧୬ ।
କଣ୍ଠ ପିକର ଫିଟେ ଜଡ଼େ କ ସ୍ତୋକ ।
କହେ ମଧୁରବାଣୀ ମଧୁ ଆଣ୍ଡ୍ରକ ହେ ।
କନ୍ଦର୍ପାରି ମନ୍ଦିରେ ରତ୍ତ ତୁଲ୍ୟକ ।
କଇତବେ ରହିଛି ବୋଲି ନର୍ତ୍ତକ ହେ । ୨୭ ।
କହି କ ନାମ ବୋଲୁଁ ଅଘ ଅନ୍ତକ ।
କଥପ୍ରିତ ଯେ ଚନ୍ଦ୍ରାବଳୀ ଦୀପ୍ତକ ହେ ।
କର ନାଁ ମିଥ୍ୟା ଚନ୍ଦ୍ରାବଳୀ ରୂପକ ।
କପୋଳ ଅର୍ଦ୍ଧଚନ୍ଦ୍ର ସେହି ଅଳକ ଯେ । ୧୮ ।
କଲ୍ପ ଚତୁର୍ଥୀ ଚନ୍ଦ୍ର ତାର ଚିବୁକ ।
କଳାଙ୍କ ଚନ୍ଦ୍ର ଭ୍ରୂରୁ ବନେ ତୁଳକ ହେ ।
କାନ୍ତି ନଳିନ ମୁଖଚନ୍ଦ୍ର ପୂର୍ଣ୍ଣକ ।
କଳାବତୀ ନିତମ୍ବ ଚନ୍ଦ୍ରବିମ୍ବକ ଯେ । ୧୯

କରରୁହରେ ସ୍ଥାନ କଲା କଳାଙ୍କ ।
କରନା ହାସ ମନ୍ଦ ଏ ଆହ୍ଲାଦକ ଯେ ।
କଣ୍ଠକ ଆଦ୍ୟ ବଲା ଚନ୍ଦ୍ର ଭୂଷଣ ।
କପୋଳ ଊର୍ଦ୍ଧ୍ୱେ ଚନ୍ଦ୍ରହଂସ ସ୍ଥାପକ ଯେ । ୨୦ ।
କରଇ ଚନ୍ଦ୍ରପୁରେ କେଳି କୁହୁକ ।
କକ୍ଷ ବହନ୍ତ ଘେନି ଚନ୍ଦ୍ର ଲେଖକ ଯେ ।
କରଇ ଚନ୍ଦ୍ରହାସ ଛବି ତିଳକ ।
କରେ ଧରେ ବ୍ୟଜନ କେକୀଚନ୍ଦ୍ରକ ଯେ । ୨୧ ।
କହଇ ଚନ୍ଦ୍ର ଆଣି ଜଳ ଏ ବାଙ୍କ ।
କ'ଙ୍କ ଗତରୁ ଗୃହିଁ ଚନ୍ଦ୍ର ନାମକ ଯେ ।
କାଳକଣ୍ଠୀ ଏ ରୁପେ ଚନ୍ଦ୍ର ସ୍ନେହିକ ।
କରଜ କୃଷ୍ଣଚନ୍ଦ୍ର ହେଉଇଣ ଶୋକ ଯେ । ୨୨ ।
କରୁଣା ହେବ ନୋହି ଏ ସାମୟିକ ।
କଲ୍ୟାଣ ହେଉ ବୋଲି କଲ ହସ୍ତକ ଯେ ।
କବିର୍ଦ୍ଧ ନାମ ଘେନି କଲା କୌତୁକ ।
କଥନେ ଉପଇନ୍ଦ୍ର ଭଞ୍ଜ ତୋଷକ ଯେ । ୨୩ ।

———

## ଅଷ୍ଟମ ଛାନ୍ଦ

ରାଗ — ବଙ୍ଗଳାଶ୍ରୀ

କଥା ହେଉ ବୋଲି କଲ ବଧୂ ମଧୁମଙ୍ଗଳ ଅନୁକୂଳକ ।
କଳହଂସଗତି ଚନ୍ଦ୍ରାବଳୀ ଆଳୀ ଆଳରେ ହେଉଁ ମେଳକ
କବରୀ ସାଜିବା କୁସୁମ ତୋଳିବା ସୁମନ ଅଭିଳାଷକ,
କଟିମେଖଳା ଘଣ୍ଟି ରଟି କୁରଙ୍ଗ ପ୍ରାୟେ ଗୃହେଁ ଆଘାତକ ।

କଦମ୍ବ ସଖୀଙ୍କ ପଦ୍ମା ଆସୁଁ ଗଣବଶା ଏଣୀ ସଦୃଶକ,
କରି ନାଟ ନିକଟକୁ ଯାଇ ଗାଇ ଏ ଗୀତ ଗୃଠୁ ବନ୍ଧୁକ ।
କଲ ଯେ ଯାହାକୁ ଆଶ ସେ ତାହାକୁ ନୂହଇ ସାହାପଛକ,
କଲମ୍ବେ ଅବଲମ୍ବେ କାମ ନାଶୁଛି ତା ବିନା ନାହିଁ ରକ୍ଷକ ।
କହଇ ନୋହି ଘେନାଇ ସଙ୍ଗ ସମ୍ପୂର୍ଣ୍ଣ ହୁଅନ୍ତା ଅନେକ,
କମଳା କହି ବସା ନାହିଁ କେ କାହା ବଶ ଶୁଣି ପ୍ରତନାକ ।
କଲ ସିଦ୍ଧନାମା ତୋଷ କ୍ଷୀର ଶିବ କାମେ କହିବା ଇଚ୍ଛୁକ,
କହି ନ ଜାଣିଲେ ଗୋସାଇଁ ଶ୍ରବଣେ ବୋଇଲେ ବେଣୁବାଦକ ।
କମଳାନନାରେ ସଦା ବିପରୀତ ହେବାରେ ମୁହିଁ କାମୀକ,
କରିବ ସାରଣା କ ସେବା ଘୁମୁରେ ବୋଲି ସଖୀ ଇଙ୍ଗିତକ ।
କରିବ କସ ବରତନ ଯତନ ବୋଲି ସେ ପାରିହାସିକ,
କପର୍ଦ୍ଦିକା ବୋଲୁ ବୋଇଲ କପର୍ଦ୍ଦି ଠାର ପ୍ରେମରତ୍ନ ଯାକ ।
କରାଅ ଭେଟ ଏକାନ୍ତେ ହରିଭାଷୀ ହେବି ଗୃଠୁ ସଙ୍କର୍ଷଣକ,
କରୁଣା ଉଣା ଅଧିକରୁ ଜାଣିମା କରମ ବିପାକ ପାକ ।
କହ୍ନାଇକ ନେଇ ନିଆଲି ବିପିନେ କଲ ଆଣି ସଂସ୍ଥାପକ,
କରାଉ ବାଣ୍ଟ ଆନନ୍ଦ କାନନରେ ଗଲେ ସଖୀ କେହ୍ନୁ ଏକ ।
କଢ଼ାଇ ବନମାଳୀଙ୍କ ପାଶେ ନେଇ ନବବାଳିକା ତିଳକ,
କହଇ ନବମାଳିକା କରିବାକୁ ହେବ ଯେ ଆଜ୍ଞା ରୁଚକ ।
କରାଞ୍ଜଳି କରି ଗୃଠୁ ଆରମ୍ଭିଲେ ମାଧବ ଯଥା ଯାଚକ,
କରିଥିଲେ ରୁଣ୍ଡ ହେମ ପ୍ରତିମାରେ ଝଲିବା ସ୍ୱର୍ଣ୍ଣପାଟକ ।
କହି ସୁଖେ କଥମାପ୍ୟ ଶୋଭା ତାର ଭାଗ୍ୟେ ମୁଁ କରି ଆଲୋକ,
କଣିକ ମାତ୍ରେ ଦେବରୂପ ଧଇଲି ହୋଇଲା ଦୂର ପଲକ ।
କଳସେ ଅଛି ପିୟୂଷ ପରି ସବୁ ମୋହିନୀ ରୂପ-ଧାରିକ,
କରାଇବୁ ଚିରଶୋଷିର ଶିରୀଷ ଅଙ୍ଗ ମୀ ମହାଯାତ୍ରିକ ।

କଳ୍ପନ ଥିଲା ପିତୁଳାକୁ ଘଉଡ଼ି ପିତୁଳା ତୋତେ ଅମ୍ବକ,
କମଣାପ୍ତେ ତୋର ଲାଗି ରହିଅଛି ଲୌହ ସେ ତୁହି ଚୁମ୍ବକ ।
କହୁଛ ବସ୍ତୁରୁଁ ଚିକୁର ନରେଖି ଆନନ୍ଦ ଚିତ୍ତ ମୃତକ,
କରୁଣାମୀର ବରଷା ଆଗ ହେବ ପ୍ରେମ ସଳିଳ ସେଚକ ।
କଳପେ ଜୀବିକା ଜୀବ କରି ତୋତେ ନୋହିଲେ ନେବ ଅନ୍ତକ
କଳଧନ ଭୁଲେ ଉଚ୍ଚେ ଡାକ ଦେଇ ତାହାକୁ ତ ଅଳଗକ ।
କମଳଭବ ବିରହ୍ନି ରୁପେ ଜ.ତ ସଞ୍ଜୀବେ ସହୁଁ ଧାନ୍ଦ୍ରକ,
କଦର୍ଥିତ ଚିତ୍ତେ କାମନା ସିଦ୍ଧକୁ କୁଶଳି କଲା ଜନକ ।
କରିବୁ ଅବ ମାନସେ ଦେହାନ୍ତରେ ତପ କାମ ମପଳକ
କପିଳ କୋପାଗ୍ନି ଦଗ୍ଧଜନେ ସେହି ଦେହେ ଜାହ୍ନବୀଶାନ୍ତକ
କରନ୍ତା ତା ବୃଦ୍ଧି ମଞ୍ଜିଷ୍ଠା ରାଗକୁ କରିବି ଦିନେ ଦିନେକ,
କଉଷେପୁ ବାସେ ପିନ୍ଧାଇ କେବଳ ଦେବି ସିନ୍ଦୂରୀ ଅଂଶୁକ ।
କରିବି ବେଶେ ସେ ଅଳକା ଦେ ଯହିଁ ଥିବ ପ୍ରବାଳ ମାଣିକ,
କପୋଳେ ଉରଜେ ତିଳକ ଲେଖିବି ଗୋଲ ଗୋଲ ଗଇରିକ ।
କପାଳେ ଆନ ଚିହ୍ନ ଥିଲେ ପୋଛି ତା ଦେବି ସିନ୍ଦୂର ତିଳକ,
କଞ୍ଜିତ ପାଦେ ରଞ୍ଜନ କରିବି ଅତ୍ୟନ୍ତ ରଙ୍ଗଯାବକ ।
କଳେବର ଯାକ ବୋଲି ହେଉଥିବି ଚୂର୍ଣ୍ଣ କରିଣ ବାହ୍ଲିକ,
କର୍ଣ୍ଣାବତଂଶ କରିଣ ଦେଉଥିବି ମୁଁ କୋକନଦ କୋରକ ।
କବଳକୁ ତାମ୍ବୂଳକୁ ଭୁଞ୍ଜାଇବି କୋଳେ ବସାଇ କାଳକ,
କଣ୍ଠରେ ପାଟଳ ଦିଶି ଯାଉଥିବ ତା ବୋଲ ପ୍ରତିବିମ୍ବକ ।
କଚ ଶାମଳ ଚୂଡ଼ କରି ଲେଉଡ଼ାଇ ଆଣୁଥିବି କୁରୁବକ,
କରବୀର ଫୁଲଗଭା କରୁଥିବି ସଜାଡ଼ାଇ ଝିଗାପ୍ରକ ।
କରୁଥିବି ସେ ଅନଙ୍ଗ ରଙ୍ଗବତୀ ଘୋଷଇ ତା ଗୁଣ ସ୍ତୋକ,
କମଳେ କମଳ ମିଶିଲ ପ୍ରାୟେ ମୁଁ ତୋ ଅଙ୍ଗ ମିଶା ଅଭିକ ।

କଳତକରେ ହରିତ ବାସେ ହର ଗଲେ ଘେନିବି ଚିହ୍ନକ,
କଳାପି କଳାପ ମୁକୁଟେ ହୋଇବ କେତକୀ ଦଳ ଦଳକ ।
କଣ୍ଟକ ହୋଇବ ରୁଞ୍ଜ ଗୁଞ୍ଜ ପୁଞ୍ଜେ ମାଳ କରିବି ଚମ୍ପକ,
କଙ୍କଣ କୁଣ୍ଡଳ ସୁବର୍ଣ୍ଣେ ଅଛିତ ଏ ଭାବେ ମୁହିଁ ଲମ୍ପକ ।
କଣ୍ଠୁ ବୀଣା ଏକା ମୋହିବାରେ ପୁଣ ଜଣାଯାଉ ରାଗ ଠେକ,
କରଇ ଶ୍ରୀକାନ୍ତ ବସନ୍ତେ ସୋ ଚିତ୍ତ ହେବ ଅତି ଉଲ୍ଲାସକ ।
କଲ୍ୟାଣ କର ଉଦ୍ଧତ ମାଳବରେ ହୋଇଲେ ସ୍ନେହ ଦାନକ,
କଷ୍ଟ ମଣିବି ତାହାର ଅନ୍ତରକ ବଳା ଶୁଣି ଏ ମାଳକା ।
କରୁଣା-ତରୁ କରି ଅବଲମ୍ବନ ଭୁଜଙ୍ଗ କରି ଆଲୋକ,
କହିଲେ ଚତୁରୀ ଗୃତୁରୀକ ତର୍କି ସଂସାର ସାର ରସିକ ।
କଞ୍ଜେ ବସ ନାନାଫୁଲେ କେଳି ଅଳି ମାଳତୀ ପ୍ରତି ଅଧିକ,
କହେ, ପାର୍ବତୀ ଅର୍ଦ୍ଧଅଙ୍ଗ କଲେହେଁ ଗଙ୍ଗା ବହନ୍ତି ମସ୍ତକ ।
କମଳାଙ୍କ ବଶ ରୋହିଣୀରେ ହୋଇ ବହୁତ ତାରା ନାୟକ,
କରାଇବି ସାତ ହତେ ଆଉ ସାତ ସ୍ୱାଧୀନଭର୍ତ୍ତା ଭୁ ଏକ ।
କରନ୍ତେ ଶ୍ରବଣ ଏ ବାଣୀ ଦ୍ରବିଣ ସୁନ୍ଦରୀ ଧରି ପୁଲକ
କହନ୍ତା କସ ମୋହନ୍ତା ବାମା ମନ ଲଜ୍ଜା ସଖୀ ନିବାରକ ।
କଳାପ ଲକ୍ଷଣେ ନେତ୍ର କୋଣେ ଫୁଲ ହସି ଆଣିଲା ଭୂଠେକ,
କରିଦେଲା ପ୍ରାୟେ ଦୃଷ୍ଟି ବଶିଗଲା ମାଳା ମୁକୁତା କୋଠିକ ।
କମ୍ବୁପାଣି ଯେନି ସାହା ହେଲା ମୋତେ ଝଟକାଇ କୌଷେୟକ,
କଦନେ କରୁଁ ମଦନ ଶର କଲା ଛେଦନ ପ୍ରତଶାୟକ ।
କଲଦନୁ ବାଳାଦର୍ଶନ ପୁତଳୁ ନ ଗଲେ କୃଷ୍ଣ କ୍ଷଣକ,
କରୁଁ ଗମନ ନନ୍ଦାନନ୍ଦ ଦାୟିନୀ ବନେ ଖୋଜି ସମୁତ୍ସୁକ ।
କରୁ ସଂଯୋଗ ଆଉ ଶ୍ୱେତ ଏକ୍ଷଣ ଉଦେ ଏଥି ପ୍ରକାଶକ,
କଥା ପ୍ରସଙ୍ଗ ପ୍ରାୟେ ତେଉଁ କହି ଯେ ଦେଲା ସ୍ପୃହି ବିଦୂଷକ ।

କର୍ଣ୍ଣମୂଳ ଗିରେ ହରି ହରିଣାକ୍ଷି ଦୂରଗତ ଆରମ୍ଭକ ।
କହିଗଲେ ଯୋଗୀ ପୁଷ୍ପ ନେଇଁ ଆମ୍ଭେ ପୂଜିବାକୁ ନିଅମ୍ବକ,
କଉଶିକ ରାଗେ ବେଣୁଗୀତ ଶୁଣି ନନ୍ଦରାଣୀ ଗର୍ଭାନ୍ତକ ।
କଳୁଷ ଦୂର ପୂର୍ବରେ ଗିଳଥିଲ ଅଘ ଗିଳୁଥିଲ ବକ
କଳିଲେ କକରି କୃଷ୍ଣ ବେଣୁ ବୋଲି କେ ଅବା ହେବ ଦୂଷକ,
କପୋଳ ସ୍ତନ ମୟୂର ଭୁଜଙ୍ଗମ ଏକସ୍ଥାନେ ବିଳସକ ।
କହେ ଉପଇନ୍ଦ୍ର ଭଞ୍ଜ ଏ ଗୀତରେ ଦୂଷଣ ନୋହୁ ଅନ୍ତକ,
କରିଛି ଆଜନ୍ମ ପ୍ରଭୁ ଏ ବାଞ୍ଛାରେ ମୁଁ ଯେ ଦୂଷଣ ଅନ୍ତକ ।



## ନବମ ଛାନ୍ଦ

(ରାଗ—ଭୈରବ

କହିବା ସୁଜନେ ଶୁଣ ଅତି ରହସ୍ୟକ ।
କଳଙ୍କୀମୋହିନୀ ବଣ ପୁଚ୍ଛେ ବିଦୂଷକ ଯେ । ୧ ।
କହିଲେ କେଶବ ପଦ୍ମା ଆଗ କାରୁଣିକ ।
କରନ୍ତା ନାହିଁ ସମ୍ପଦ ଲଭିବା ସୂଚକ ଯେ । ୨ ।
କଲ୍ୟ ଦରିଦ୍ରତା ନାଶ ହେବା ତା ବଶକ ।
କଦଧାରେ ତମେ ଯାଉଁ ବାସରେ ଆଲୋକ ଯେ । ୩ ।
କର୍ମ ଦୂର ଉଦେ ଦେଖାଇଛି ସୁମାର୍ଗକ ।
କରିବାକୁ ରାଜାପଣ ସୌନ୍ଦର୍ଯ୍ୟ କଣ୍ଟକ ଯେ । ୪ ।
କଥାହେଉଁ ଚନ୍ଦ୍ରାବଳୀ ଶୋଭହିଁ ବୃଶକ ।
କଳାବତୀ କଲ୍ୟଗତ ଏମନ୍ତ ଭାଷକ ଯେ । ୫ ।
କହି ଯା ଆହୋ ପାଷ୍ଟେଟି ମନକୁ ପେଷକ ।
କରାଲେ ଡାକେ ନ ବର୍ତ୍ତି ରେରଣରଣକ ଯେ । ୬ ।

କବଚ ସିହାଇ ହୋଇ ସୁସ୍ନେହା ପାର୍ଥିକ ।
କଳମ୍ବ ମୁହାଁ ମୋଡ଼ିବ ଝଡ଼ିବ ସାୟକ ଯେ । ୭ ।
କଣ୍ଟାକ୍ଷ ଘାତରେ ଜାଳଥିଲେ ସୁଗନ୍ଧକ ।
କଣ୍ଟାକ୍ଷ ପାତରେ ଜାଳି ସୁଧା ପିତଳକ ଯେ । ୮ ।
କରାଇଛି ମେ ହୃଦରେ ସେ ସିନା ଦର୍ପକ ।
କରି ବିସ୍ମିତ ମୁଁ ତାରେ ପ୍ରାଣ ସମର୍ପକ ହେ । ୯ ।
କଲେ ବିଷଦୃଷ୍ଟି ଭଳି ନାଶେ ମୋ ସେବକ ।
କର୍ମେ ଅଛି ଦୃତଯୋଗ ବୋଲି ସେ ତର୍କିକ ଯେ । ୧୦ ।
କଚ୍ଛ ସୁଧାରେ ଦିବସ ନଳିନୀ ଦୀପ୍ତକ ।
କନ୍ୟା ନଳିନୀଠି ଏବେ କରିଥା ବିବେକ ଯେ । ୧୧ ।
କାହୁଁ କାହିଁ ବୀର ପୁଣି ଏ ବିପ୍ରଲମ୍ଭକ ।
କଳା ସମ୍ଭୋଗ ପର୍ଯ୍ୟନ୍ତେ ସେ ସୁଧା ମୁଖିକ ଯେ । ୧୨ ।
କରିବ ପୁଣି ଜନିତ ମାନସାରୋଷ୍ଟକ ।
କହେ ହରି କାହୁଁ ଯୋଡ଼ି ଜୀବଥିବା ଯାକ ଯେ । ୧୩ ।
କରୁଥିବି ଖ୍ୟାତ ଏକା ଜୀବେଶ୍ୱରୀ ବାକ ।
କଉସୁଭ ନ ବହିଲି ବିମ୍ବେ କରି ଦାକ ଯେ । ୧୪ ।
କହିଲା ଦ୍ୱିଜ ଭୋଗନା ନାମ ତାଦର୍ଥକ ।
କହେ କହ ପ୍ରଶ୍ନପୂର୍ବକ କରିଛି ଠିକ ଯେ । ୧୫ ।
କଉଶଲ୍ୟା ଦାତା ପ୍ରୀତି ଉତ୍ତରେ କଥକ ।
କହ ଭୋଗନା ନିୟମ କରିବା ତଥ୍ୟକ ଯେ ।୧୬।
କଇରବା ପଛେ ଥାଇ ଶୁଣି ଏମାନଙ୍କ
କଥନୀୟ ବାଳା ପାଶେ ପୃଥକ ପୃଥକ ଯେ ।୧୭।
କର୍ଣ୍ଣେ ପଡ଼ି ଶୈବ୍ୟା ସଖୀ ହୋଇ ଉତ୍ଫୁଲ୍ଲକ ।
କହି କୃଷ୍ଣ ବାଳେ ହେଲ ସୁମନ ରଞ୍ଜକ ଯେ ।୧୮।

କଲ୍ କେ ବଡ଼ଭାଗ୍ୟ ସେ ସୁନ୍ଦରୀ ବଣିକ ।
କଙ୍କତିକା ଲାଗିନାହିଁ କେଉଁ ସୁପଣ୍ଡିକ ଯେ ।୧୯।
କଉମୁଦୀ ପଦ୍ମରେ ଯେ ନୟନତାରକ ।
କପଟୀତ ବୋଲୁଁ କହେ ସେ ଧରି କରକ ଯେ ।୨୦।
କଳାକେଳି ଶାସ୍ତ୍ର ପଢେ ପୂଜି ବିନାୟକ
କଣ୍ଠୀଠି ଛଇଦା ଆଜ ସିନା ବିଧାୟକ ଯେ ।୨୧।
କରୀ ବଣିକର ଗୁରୁ ସିଦ୍ଧି ସୁରଚକ ।
କମଳାକ୍ଷୀ ହୋଇନାହିଁ ବିଶୁଦ୍ଧେ ଲେଖକ ଯେ ।୨୨।
କଇରବା ଆଣିଅଛୁ ତା ପିଠା ପୁସ୍ତକ ।
କରଗୁନ୍ଥା ଏଥି ଶିଖିଲନି ଏକ ଶ୍ଳୋକ ଯେ ।୨୩।
କରେ ଅଭରସ ନେହି ନ୍ୟାୟ ଉଚ୍ଚାରକ ।
କଇଶେରୀ ବୃନ୍ଦ ପାଠ ହୁଅନ୍ତୁ ପଠକ ଯେ ।୨୪।
କହେ ଶୈବ୍ୟା ଦିବ୍ୟରତ୍ନ ଧାତା ଅବିବେକ ।
କରେ ପାଷାଣ ଅନ୍ଧର କରିବା ବନ୍ଧକ ଯେ ।୨୫।
କଲେ ଯେବେ ହେଲ ରାଜାନନ୍ଦନ ଗ୍ରାହକ ।
କଲ୍ମଷ କ ଅଛି କେ ହୋଇବ ବିରୋଧକ ଯେ ।୨୬।
କର୍ତ୍ତବ୍ୟ ଯାର ହୋଇବ ବୈର ପରିବାକ ।
କର୍ଣ୍ଣଭୃଙ୍ଗେ ସୁଧା ପିଇ ସବେଁ ସମ୍ମତକ ଯେ ।୨୭।
କଥାମୃତେ ନର୍ମଲେ ସଖିଙ୍କ ପ୍ରବର୍ତ୍ତକ ।
କରେ ମୁଖର ଗୋଚରେ କେବଳ ଅଂଶ୍ରିକ ଯେ ।୨୮।
କବିପର ହେଉଁ ପଦ୍ମ ହୋଇ ତା ଗର୍ଭକ ।
କଳକୂତ ଯଥା ଭଙ୍ଗ ଯେ ତ ସରୁପକ ଯେ ।୨୯।
କଜମୋଦକୀ ଧାରଣ ଚରିତ ବନ୍ଧକ ।
କରୁଁ ବନ୍ଦନା ବିକର୍ତ୍ତନ ମୁଁ ତିଳକ ଯେ ।୩୦।

କହେ ସୀଳା କାଢବାଡ଼େ ନଜ ଅବଲୋକ ।
କରିବେ କୋଳରେ କେବେ ଏମନ୍ତ ଲୋକଙ୍କ ହେ ।୩୧।
କସ୍ତୁରୀ ଚିତାରେ ଦେଇ କୁଙ୍କୁମ ଚୋପିକ ।
କର୍କସ୍ତନର୍ଣ୍ଣିତ ସଦା ସେ ରତ ତୃପ୍ତକ ହେ ।୩୨।
କଥା ସଖୀ ହୃଦଯତ କଠିଣ ପ୍ରୀତକ ।
କର୍ଷି ଉଚ୍ଛନ୍ନ ଲଙ୍ଗଳେ ଅନଙ୍ଗ ହଳକ ହେ ।୩୩।
କଳି ସାଧୁଙ୍କ ସାରସ ବୀଜ ବିକ୍ଷେପକ ।
କଷ୍ଟଦାନେ ସଙ୍କୁରେଣ ଚାରୁ ତଳ୍ଲକ ହେ ।୩୪।
କସ୍ତରିବା ସଳିଳ ବଳାଇ ସଫଳକ ।
କରୁଁ ଭୋଗ ସ୍ନେହ ଜାତ କରି ସେ ରସିକ ହେ ।୩୫।
କବି ଉପଇନ୍ଦ୍ର ଭଞ୍ଜ କୃତ ସୁଗୀତକ ।
କରମେ କରମେ ଛନ୍ଦୁ ଛନ୍ଦ କଉତୁକ ହେ ।୩୬।



## ଦଶମ ଛାନ୍ଦ

### ରାଗ—ରାଜବିଜେ

କଚ୍ଛଦା ନଶୀକ ପରବେଶ ଆସି କ ବଚିନ୍ତ ଦନ୍ଦଶୁକ ।
କଳା ଘାରିତ ନଦ୍ରାବିକ୍ଷେ ଦମ୍ପତି ଦର୍ଶନେ ନାହିଁ ପାତକ ॥
କଦଳୀକୁଟେ ଆରତେ ଧ୍ୱନ କଲେ ବିଦେଶୀ ବୃନ୍ଦ ମଣ୍ଡୂକ ।
କମ୍ବୁ କାମିନୀ ଦେଲେ ଦୁହେଁ ଦୁହିଙ୍କ ମେଳ ହୋଇ ଜାଗଳକ ।
କର୍ମେ ଗୃହର ସବଂସାରି ଅନ୍ତକ ବେଶବତୀ ପ୍ରହରକ ।
କରୁଣାଗର୍ଭ ସମ୍ଭୂତା ଚନ୍ଦ୍ରାବଳୀ ମଣ୍ଡିଲ ଯାଇଁ ପର୍ଯ୍ୟଙ୍କ ॥
କଥକେ ଜାଣ ତାରାବଳୀ ବୋଇଲା କହକନା ଗୋଟିଏକ ।
କପୋତବାଣୀ ସାମ୍ୟହିଁ ତହିଁ ଆଣି ଭଦ୍ରା ହୋଇଲା କଥକ ॥

କହେ ମାହା ମନ ଯହିଁକ ସାଗର ଲଙ୍ଘଇ ତହିଁକ ଲେକ ।
କପାଟି ସେହି ବେନ ଦଶେ ଆସାର ପଦ୍ମରାଗ ଭକତକ ॥
କଉଶଳ ଦ୍ୱୀପ ନୃପତ ଦୁହିତା ସୁଲୋଚନା ନାମ ଧୃକ ।
କରେ ଯେତେଣେ ଦୃଷ୍ଟି ମୀତ ପଦ୍ମ ଦୃଷ୍ଟି କାନ୍ତିକ ଚମ୍ପା ଶମ୍ପକ ॥
କନ୍ଦର୍ପ କୁନ୍ଦେ କୁନ୍ଦିଅଛି କ ଉରୁ-ସ୍ତମ୍ଭ ସ୍ତନ ସମ୍ପୁଟକ ।
କଳେବର ଯାକ ମାପର ଆପ୍ଲୁତ ଗର୍ଣ୍ଣି ଶିରୀ ଅଙ୍କୁଟକ ॥
କରୀଗାମୀ ମୁଖ ମାଜିଲା ମୁକୁର ପ୍ରାୟେ ଦଶେ ଜନ ନକ ।
କଳ୍ପ ବର ବିଦ୍ୟାଧର ନାମେ ନୃପ ବିଶ୍ୱକୃତେ ତା ଜନକ ॥
କର୍ପୂର ମଞ୍ଜରୀଠାରୁ ଶୁଣି ଶୋଭା ଏହି ଦ୍ୱୀପ ଭୂନାୟକ ।
କଉମାର ଲୋଭ ତପ କରି ଲଭି ଭାଗ୍ୟରୁ ଦିବ୍ୟ ଘୋଟକ ॥
କରି ଆରୋହଣ ପ୍ରଚେଟ ସଙ୍କୋଷ ମାଧବ ହେଲା ପଥିକ ।
କମେ ନହିଁ ବାରି ଖୁରୀ ଗଲା ମାରି ସେ ହୟ ସିନ୍ଧୁ ଜାତକ ॥
କଟକ ପ୍ରବେଶ ଧନ ଦେଇ ରହି ହୋଇ ମାଳିନୀ ଅର୍ଥିକ ।
କର୍ଣ୍ଣୋଳ କାହାଳ ଧ୍ୱନି ଶୁଣି ଦଧି ମାଛ ଉତ୍ସବେ ଆନ୍ତକ ॥
କବରୀ ସାଜିବାକୁ ରାଜକୁମାରୀ ପାଇଁ ନେଉଁ ପୁଷ୍ପ ସ୍ରକ ।
କହି ବର୍ଣ୍ଣା ଦେଇ ପତ୍ରିକା ତହିଁରେ ଦାଣ୍ଡେ ଯିବା ପ୍ରଗୃରକ ॥
କର୍ପୂର ଅଙ୍ଗ ଏକାନ୍ତରେ ଦଇବେ ଥିଲା ପାଇ ତା ପାଠକ ।
କଥା ଆଦ୍ୟ ପ୍ରାନ୍ତେ ନାମକୁ ପ୍ରଗୁରି ବୋଇଲା ହୃଅ ଦର୍ଶକ ॥
କରାଇ ଜଗତ ଆରୋହଣ ବରରୋହା ଯହୁଁ ସଉତ୍ସୁକ ।
କର ଶାଖାରେ ସେ ଦେଖା ଦେଇ ଏହି ଏହି ଦସ୍ୟୁଧ ପଟକ ॥
କଳକଣ୍ଠ କଣ୍ଠ ଫିଟିଗଲା ଦର ଯେଉଁ ବଶ ଅତରକ ।
କଲା ମଧବ ଆଶ୍ଳେଷ ରତ୍ନମତୀ ହୋଇବାକୁ ବାଳାସକ ॥
କଥିତା ଦେବୀ ଗନ୍ଧଷଣେ ଯିବି ମୁଁ ଦେବି ହେ ଠେକ ହସ୍ତକ ।
କର ବଢ଼ାଇ ନେଇ ହୟେ ବସାଇ ନଅନ୍ତୁ ନିଜ କଟକ ॥

କହନ୍ତେ ମାଳିନୀ ନଳିନୀ ସଙ୍କେତ ସୁପୁରୁଷ ଜାଗରୁକ ।
କରବାଳେ ଥୋଇ ବାଜୀ ସଜି ଶୋଇ ଜଗଇ ଦେଇ ଚେଟକ
କର୍ଣ୍ଣେ ଶୁଣି ବାଦ୍ୟ ନାଦ ଚଢ଼ି ଅବିଭୂତ କନ୍ୟା ଆକର୍ଷକ ।
କରୁଁ ହା ହରି ବାରିଧି ଲଙ୍ଘିଗଲା ଶୁଭେ ନେଲା ନେଲା ଭାଜ ॥
କହିଇଲା ଚେତା କୁମର ମଳିନୀ ତୋ ଅବୀ ଶ୍ରବଣେ ଧ୍ୱକ ।
କରି ଜୀବନକୁ ତଦ୍ୱରେ ଦେଖିଲା ନାହାନ୍ତି ଚେଟ ଘୋଟକ ॥
କରିଣ ଚେନ ପୁରୁଷର ଅସତ୍ ଙ୍କ କଲା ଲୋକପାଳକ ।
କର୍ମେ ଏହା ଥିଲା ରଜସୁତା ନହ୍ରାଇ ମାଳାକାଙ୍କ୍ଷୀ ଆକୁଳକ ॥
କର୍ଣ୍ଣାଟେ କାଞ୍ଚି ନଗରେ ଗନ୍ଧିଶେଷ ଜେମା ଆନ ଅବଲୋକ ।
କବିଠ ବାସୀ ଅପସରୀଭୋଗକୁ ବାଞ୍ଛି କେତେ ଅବିବେକ ॥
କାର୍ପାସ କୁସୁମ ହୋଇଅଛି ସୁବାସିତ ହୋଇବା କାମ୍ୟକ ।
କସ୍ତୁରୀ ଯୋଗ୍ୟ ମୂତ୍ର ଛବି କୁନ୍ଦରେ ଯେ ହୋଇଛି ଅଲଭ୍ୟକ
କପାଳି ସଙ୍ଗ ସମ୍ପତ୍ତିକ ଛଡ଼ାଇ ରଙ୍କ ଭୋଗକୁ ବାଞ୍ଛିକ ।
କନ୍ୟା ଡିଗୁରି ବିଭିବିଧିଙ୍କ ପାଇଁ ଘଟିଆଇ ପ୍ରତେଙ୍କ ॥
କଷି ଅସିକ ବଙ୍ଗଦେଶେ ପଶିଲା ଅର୍ଦ୍ଧେ ବସି ସମୁଦ୍ରକ ।
କରଇ ନିର୍ମାଣ ବାସ ଗଙ୍ଗାତୀରେ ପେଷିଲା ବାଜୀ ପାଳକ ॥
କବାଇ ପରେ ନଶାର ଧରି ସ୍ତ୍ରୀତ ଗୋପ୍ୟ ଚୋପର ମସ୍ତକ ।
କଙ୍କଣ ମୁଦ୍ରିକା ଧାରଣ ମୁକୁତା ରତ୍ନେ ନାସାପୁଟକ ॥
କରି ପୁରସ୍କାର ରାଜପୁରୀ ଦେଲା ଖଣ୍ଡନେ ଦୁଷ୍ଟଖଣ୍ଡକ ।
କପିଳ ଧାରା ହଂସ ସ୍ଥାନ ଜଗଇ ଜାଗ୍ରତ କରି ପଦକ ॥
କଷଣି ଆରତ ମାନ୍ୟ ବେନି ପୁଂସ ମନାଇ ଯୋତ୍ତ ବଣ୍ଡିକ ।
କଷଣିରୁ କାଣ୍ଡ ଖସିଲା ପରଯ୍ୟେ ଜାହ୍ନବୀ ଲେଖେ ଲେଖକ ॥
କଷ୍ଟାନ୍ତରି ନଷ୍ଟ ପ୍ରଚେଷ୍ଟା ମିଳିତ ତନିଙ୍କି କରି ଅଟକ ।
କପଟ ରାଜ ଜାମାତା ଭେଟାଇଲେ ପଦାତ ହୋଇ ବେଷ୍ଟକ ॥

କମଳା ଗଜସ୍ତ୍ରୀ ସେହୁ ମାଧବରେ ଈଶ କରି ସଂସ୍ଥାପକ ।
କଲ୍କି ସୁଚଣ୍ଡୀ ଅର୍ଜନ କନ୍ୟା ସର୍ବ ବିଦ୍ୟାଧରେ ସମର୍ପକ ॥
କରମେ ପ୍ରଚେଷ୍ଟେ ଦୀନ ହୋଇଥିଲ ଦଣ୍ଡମାନ ବିସାରକ ।
କଥାଏ ସାମ ପ୍ରକାଶ କଲ ଏତେ କହି ହେଉଥାଇ ମୂକ ॥
କମଳା ସମେକ ଦେଇ ନର୍ମୀଶକ ମହା ରମଣୀୟ ଏକ ।
କହିଲ କାମ ଅହିଲ ମାଗେ ଭାନୁ ସେ ମାଇଲେ ଜମ୍ବୁସେକ ॥
କରି ପ୍ରଦକ୍ଷିଣ ବ୍ରାହ୍ମଣ ସେ ଆଗ ହୋଇବ ଉପସ୍ଥିତକ ।
କନ୍ୟାଦାନ ଠାରେ ଶୁଣି ହରି ହରି ହରି ହରି ଆରୋହକ ॥
କରି ପ୍ରଦକ୍ଷିଣ ବ୍ରହ୍ମଙ୍କୁ ଗୌତମ ଉତ୍ତମ ଗ୍ରମାନାଯୁକ ।
କନ୍ୟା ନ ପାଇ ତପନତ ବର୍ତ୍ତିଲେ ବାସବ ଅଭିମାନକ ॥
କଳପେ ବେଦ ଜଡ଼ବେଦ ଜଡ଼କୁ ରସ ବାକ୍ୟ ପ୍ରଦାୟକ ।
କରଚ ନାହିଁ କରନ୍ତ୍ର ପଶୁ ଗତ ଏ ପୁନଃ ତତପ୍ରାୟେକ ॥
କର୍ପୂରୁଁ ଶୀତଳ ସୁବାସ ଅଙ୍ଗକୁ କଲତ ଭସ୍ମ ମିଶ୍ରକ ।
କଜପୁନୀ ପିନ୍ଧା ପିନ୍ଧ କ ଜାଣିବ ପାଇଲେ ପାଠ ଅଂଶୁକ ॥
କବି ଜନ୍ମାଇ ଦାନମଣି ତା ମଣି ବାଳା ଯେପରି ଦଗ୍ଧକ ।
କନ୍ଦର୍ପ କେଳି ଆରତେ ହେଉଥିବ ଚିତ୍ତ ସନ୍ତାପ ଖ୍ୟାତକ ॥
କରି ଏ ବିଗ୍ରହ ସେହି ବେମକର ଏକାନ୍ତରେ ବିନାୟକ ।
କକ୍ଷାଫଳାଶନ ଇକ୍ଷୁରସ ପାନ କଲ ପ୍ରାୟେ ସନ୍ତୁଷ୍ଟକ ॥
କଳେବର ଶିଳା.ହେବାପାଏ ପ୍ରତି ଲୀଳା ନେହିଲ ବ୍ୟକ୍ତକ ।
କନ୍ୟା ଗମନ ପ୍ରଧାନ ଧାତା ଦେବା ଆନ ଦେବାର ଜନକ ॥
କର କମ୍ପା ମୂଳ ଗୁରୁ ପ୍ରତି ଶୀଳ ତାରାଚନ୍ଦ୍ରରେ ସ୍ନେହକ ।
କହିଲ ଶୈବ୍ୟା ସିଦ୍ଧ ଏ ଦୁଇ କଥା ସମସ୍ତଙ୍କୁ ସୁରୋଚକ ॥
କଥାଏ ରହିବାକୁ ପଦ୍ମା ବୋଇଲ ଏବେ ହୋଇ ଉନ୍ମୁଖକ ।
କହେ ଉପଇନ୍ଦ୍ର ଭଞ୍ଜ କଞ୍ଜମୁଖୀ ଆଜନ୍ମ ସୁଖୀ ତୋଷକ ॥

—ସ ମା ପ୍ତ—

# କଳାକଉତୁକର ସଂକ୍ଷିପ୍ତ ଟୀକା

## ପ୍ରଥମ ଛାନ୍ଦ

୧ମ ପଦ—୧ମ ପାଦ କମଳଧର—ନାରାୟଣ ଅର୍ଥାତ୍ ଶ୍ରୀରାମଚନ୍ଦ୍ର । କମଳଧର—କଳାଚମଧ ଓ କୌଶପ । ନାୟକ—ସ୍ୱାମୀ । ୧-୨ କମଳଧର—ଶିବ ଓ ବ୍ରହ୍ମା । ୨-୧ କମଳା—ଲକ୍ଷ୍ମୀ । କମଳାସାର—ଦବ୍ୟବର୍ଣ୍ଣ ବଶେଷ । ୨-୨ କମଳାସନ—ବ୍ରହ୍ମା ଓ ପଦ୍ମାସନ । ପୁଷ୍ପଶାୟକ—ଫୁଲଧନୁ ବା କନ୍ଦର୍ପ । ୩-୧ କଦମ୍ବ—ବ୍ୟାକୁଳତ ଭାବ ଓ ସମୂହ । ଲୟକ—ଅଶାନ୍ତ ଓ ଲୟକାରୀ । ୩-୨ ତନୁ—ଦେହ । ସାୟକ—ସମୂହ ଓ ଧନୁଶର । ୪-୧ କଳାପ—ମୟୂରଚନ୍ଦ୍ରିକା ଓ ଭୂଷଣ । ୪-୨ କଳାପ—ପର୍ବତ ଓ ବନ । ୫-୧ କବନ୍ଧ—ମସ୍ତକ ନ ଥିବା ଦେହ । କବନ୍ଧ କ୍ଷୟକ—କବନ୍ଧ ଦଇତର ବନାଶକାରୀ ଶ୍ରୀରାମଚନ୍ଦ୍ର । ୫-୨ କବନ୍ଧ ଗଢ—ସମୁଦ୍ର ଜଳରେ ବନ୍ଧ ବାନ୍ଧିକରି ଯିବା । ୬-୧ କର୍ବୂର ନଗର—ରାକ୍ଷସପୁର ବା ସୁବର୍ଣ୍ଣମୟ ପୁର ଅର୍ଥାତ୍ ଲଙ୍କାପୁର । କର୍ବୂର—ରାକ୍ଷସ । ବାରବାର—ଅନେକ । ୬-୨ କର୍ବୂର—ଜଳ । ସାଗର—ସମୁଦ୍ର । ଉପାୟକ—ରତନାକାରୀ । ୭-୧ କବ କବରେ—କବ ଓ ପଣ୍ଡିତମାନଙ୍କୁ । କୀର୍ତ୍ତିଦାୟକ—ଯଶକାରୀ । ୭-୨ କବ—କାମନା । ସଞ୍ଚୟକ—କାମନା ପୂର୍ଣ୍ଣକାରୀ ବା କର୍ମଫଳ ସଞ୍ଚୟକାରୀ । ୮-୧ କରୁଣାକର—ଦୟାର ସମୁଦ୍ର ଶ୍ରୀରାମଚନ୍ଦ୍ର । ୮-୨ ଡଳା—ମିଳନ । କୁତୁକ—କଉତୁକ ବା ଲୀଳା । ୯-୨ ପ୍ରତିପାଦ—ପ୍ରତ୍ୟେକ ପାଦ । ବାସ—ସ୍ଥିତ ବା ବସତ । ୧୦-୧ ପ୍ରାଚୀନ—ପୂର୍ବକାଳର ଲୋକ । ୧୦-୨ କ—ଦୋଷ । କ୍ରମରେ—କ୍ରମବଶତଃ । ଖଳ—ଦୁଷ୍ଟ । ପରିପନ୍ଥିକ— ବିରୋଧୀ ବା ଶତ୍ରୁ । ୧୧—୧ କଳ ନ ଥିବ—କଳଣା କରି ନଥିବ ବା ଜାଣି

ନଥିବ । ୧୨—୧ କଙ୍କଣ—କାଚ । ଝଟଲୀକା —ଝୋଙ୍କ । ୧୨-୨ କଉଶିକେ—ପେଚକମାନଙ୍କୁ । ୧୩-୧ କରଲ— କରଣ ୧୩-୨ କଞ୍ଚୁକିନ—ସର୍ପ ଓ ନପୁଂସକ । ଇଳାମଣି—ସୂର୍ଯ୍ୟକାନ୍ତ ବା ଚନ୍ଦ୍ରକାନ୍ତ ମଣି । କରଣୀ—ଗାଈ ଓ ନାରୀ ୧୪-୧ ନାକ—ସ୍ୱର୍ଗ ୧୫-୧ କଇରବ—କଇଁ ଫୁଲ । କୋକନଦ—ରକ୍ତପଦ୍ମ । ସନଦୀ—ଉତ୍ତମନଦୀ । ସ୍ଫୁଟିକ— ପ୍ରସ୍ଫୁଟିତ ହେବା । ୧୫-୨ କଳାନିଧି—ଚନ୍ଦ୍ର । ଭାନୁ—ସୂର୍ଯ୍ୟ । ବନେ—ଜଳରେ । ଛଟକ—ଶୋଭା । ୧୬-୧ କଳର—ଜର୍ଜ୍ଜବା ବା କଢ଼ୀର । ସ୍ୱୈରକ—ସ୍ୱୈର । ୧୬-୨ ଖାତୁକ—ଉପଯୁକ୍ତ । ୧୭-୧ କପାଳୀ—ଦେବୀ । ୧୭-୨ କଳକଣ୍ଠ— କୋଇଲି । ୧୮-୧ କଳହପ୍ରିୟ—ନାରଦ । ନଭେ—ଆକାଶରେ ବା ଶୂନ୍ୟମାର୍ଗରେ । ୧୮-୨ କଳୁଭ—ଦାଗ । ୧୯-୧ କଦଳୀ—କନ୍ଦଳ, କୃଷ୍ଣବର୍ଣ୍ଣ ଓ ମେଘ । ଚଞ୍ଚଳା—ଲକ୍ଷ୍ମୀ ଓ ବିଜୁଳି । ହରିତାମ୍ବର—ହଳଦିଆ ଲୁଗା । ଶଂପକ—ବିଜୁଳି ତୁଲ୍ୟ ତେଜୋବନ୍ତ । ୧୯-୨ ଚଞ୍ଚଳା—ଲକ୍ଷ୍ମୀ ଓ ଲକ୍ଷଣଯୁକ୍ତ କନ୍ୟା । ହରିତାମ୍ବରେ—ଶ୍ରୀକୃଷ୍ଣଙ୍କ ସଙ୍ଗରେ । ରମ୍ୟକ—ସୁନ୍ଦର । ୨୦-୧ କରଣେ—କରିବାରୁପ୍ରବୃତ୍ତେଲେ—ଚଳିବା । ୨୧-୧ କଚ୍ଛ—ସମାନ । ସ୍ଫଟିକ—କାଚ ଭଳି ସ୍ୱଚ୍ଛ ପଥର । ୨୧-୨ କଳନ୍ଦ— ସୂର୍ଯ୍ୟ, ପର୍ବତ ଓ ଉର୍ବର ଭୂମି । ପରିପାଟିକ—ସୁନ୍ଦର ଭାବ । ୨୨-୧—କଦମ୍ବକ—କଦମ୍ବଗଛ । ୨୨-୨ କଦଳ ଅଣେ—ଇଳ ନେବା ଆଶାରେ । ଅବଲମ୍ବନ—ଆଶ୍ରୟ ବା ଗ୍ରହଣ କାରୀ । ୨୩-୧ କଳରବ—କପୋତ । କଳରବରୁ—ରାବବାରୁ ଯାମ ଯାମକ —ପ୍ରହର ପ୍ରହର । ୨୩-୨ ନେଳକନ—ଦେଖିବା । ୨୪-୧ ଶୃଙ୍କ—ଶସ୍ୟାଦର ସୂକ୍ଷ୍ମାଗ୍ରଭାଗ । ୨୪-୨ ଅଳକା—କୁବେର ପୁରୀ । ଧନଦ—କୁବେର, ଧନଦାତା । ବିଭୂଷିତ—ଅତ୍ୟନ୍ତ ସୁନ୍ଦର ଯୁକ୍ତ । ପୁଷ୍ପକ—କୁବେର ରଥ । ୨୫-୧ କୌଶିକ—ପେଚକ । ୨୫-୨ ଉଦିତ—ପ୍ରକାଶିତ । ୨୬-୧ ରାଧାମ୍ବଦ—ରାଧାଙ୍କ ପଦ । ମଧୁଋତୁ—ବସନ୍ତଋତୁ । ୨୬-୨ କଉରବ—କୁରୁବଂଶ । ପ୍ରଥମ—ତୁଲ୍ୟ । ୨୭-୧ ପ୍ରତୀତ—ବିଶ୍ୱାସ ଓ ଜଣାହେବା । ସୁରଭି ପୁଷ୍ପକ—

ମନୋହର ୨୭-୨ କର—ହସ୍ତ । ଦଣ୍ଡ—ଯଷ୍ଟି । ଛନ୍ଦ—ବନ୍ଧନ । ସ୍ଫୁରନ୍ତ—ତେଜୋମୟ । ୨୮-୧ କଳ-ଶବ୍ଦ ୨୮-୨ ଘନ—ମେଘ । ଅପ—ଜଳ । ୨୯-୨ କଣ୍ଠ—ପ୍ରମାଣ । କ'ରେ —ଜଳରେ । ହେମନ୍ତ—ହେମକାଳ । ଭୂଷକ—ସୁନ୍ଦର ବା ଶୋଭାଯୁକ୍ତ । ୩୦-୨ ମନ୍ଦ—ଗାଢ । ୩୧-୧ ରମାନାୟକ—ଶ୍ରୀକୃଷ୍ଣ । ୩୧-୨ କଷ-କୃତ—କାଖହେବା । ୩୨-୧ କରମେ—କର୍ମରୁ ବାହ୍ନାଦ୍ୱାର ବଳରେ । ୩୨-୨ ଅନ୍ତକ—ବିନାଶକର୍ତ୍ତା । ୩୩-୧ ଅରାମ—ବଗିଚା । ରାଜକ—ସୀମା:ମଧ୍ୟ ସ୍ଥାନ । ୩୩-୨ କଣ୍ୟପସୁତ— ଋଷିଗଣ ଓ ଦେବତାଗଣ । ନନ୍ଦନ—ସ୍ୱର୍ଗ ଓ ଇନ୍ଦ୍ରଙ୍କ ଉଦ୍ୟାନ ଭଜକ—ସ୍ୱର୍ଗର ନନ୍ଦନବନକୁ ନିନ୍ଦାକାରୀ ବୃନ୍ଦାବନ । ୩୪-୧ କଥନ— କହିବା । ବାଚକ—ପାଠକ, ପଣ୍ଡିତ ଓ ବଚନ ପ୍ରକାଶ କରିବା ବ୍ୟକ୍ତି । ୩୪-୨ ଚଇତ୍ରରଥ—କୁବେରଙ୍କ ବଗିଚା । ରୁଚକ—ଶୋଭନୀୟ । ୩୫-୧ କଦମ୍ବ—ସମୂହ । ତରୁ—ଗଛ । କ୍ଷୀଣକ—କ୍ଷୀଣ । ୩୫-୨ କରାକର—ଗହଳ ଓ ଲଗାଲଗି । ଚୈଳକଲତା—ତେଜୋବନ୍ତ ଲତା । ପୂର୍ଣ୍ଣକ—ପୂର୍ଣ୍ଣ । ୩୬-୧ କଳାକର—ଚନ୍ଦ୍ର । ସୂର—ସୂର୍ଯ୍ୟ । ଅଂଶୁ—ସୂକ୍ଷ୍ମକଣା । ୩୬-୨ ଚମୂ—ସେନାଦଳ । ୩୭-୧ କମଳାରେ—ନିର୍ମଳ ଜଳରେ, ଶୋଭାରେ । ୩୭-୨ ସନ୍ତରଙ୍ଗୁ—ବସନ୍ତଋତୁ । ସ୍ଫୁଟକ ପ୍ରସ୍ଫୁଟିତ ହେବା । ୩୮-୨ କରମେ—କ୍ରମେ । ସଫଳେ—ଫଳଯୁକ୍ତ ହୋଇ । ପୁରୁସୂକ୍ଷ୍ମକ—ଅଧିକ ପରିମାଣରେ ଫଳ ହେବା । ୩୯-୧ ଗୁଳ୍ମ—ବୃକ୍ଷାଦିର ବୁଦା । ସ୍ୟନ୍ଦନ—ରଥ । ଠାଟିକ —ଶୋଭା । ୪୦-୧ କଳାପୀ—ମୟୂର । ନଟନ୍ତି—ନୃତ୍ୟ କରନ୍ତି । ରଟନ୍ତି—ରାବକରନ୍ତି । ପରିପୁଷ୍ଟକ—ରୋଗହୀନ, ସବଳ, ସରାଗ, ତୋଷଯୁକ୍ତ, ବଳବନ୍ତ ଓ ସୁନ୍ଦର । ୪୦-୨ କରଣେ କରିବାରେ । ୪୧-୧ ପୁଚ୍ଛ—ଲାଞ୍ଜ । ୪୧-୨ କଂକଣ—କାଚ । ଅଳମଣ୍ଡଳ—ଭ୍ରମର-୪୨-୧ ମୃଦୁ—ଧୀର । ଅନକ—ଢୋଲ ଶବ୍ଦ । ୪୨-୨ କଠାଟିକ—କଜ୍ଜ୍ୱଳପାଖ ପକ୍ଷୀ । ୪୩-୧ କମନୀୟ—ସୁନ୍ଦର । ୪୩-୨ କଟିକ—କାଠ ବିଶେଷ । ଝିଲ୍ଲିକା—ଝିଂକାରୀ । ଝଙ୍କାର—ଶବ୍ଦ ।

ତାଳମେଳକ—ତାଳ ମିଶାଇଲା ବାଳା । ୪୪-୧ କଳକଣ୍ଠ—କୋଇଲି । ଅଦ୍ୟ—କଳକଣ୍ଠର ପ୍ରଥମ ଅକ୍ଷର ଅର୍ଥାତ୍ "କ" । ଅକାରବନ୍ତ—"କା" । ସୂତ୍ର ଧାରକ—ନାଟ୍ୟ ପ୍ରସ୍ତାବକ । ୪୪-୨ ବୃକ୍ଷରାଜ—ତାଳଗଛ । ଭଟ୍ଟାରିକ—ପୂଜ୍ୟ । ୪୫-୧ ସହଚରୀ—ସଖୀ । ୪୬-୧ କଉଶଳ—ଦକ୍ଷତା । କଟକଟ—ଦରଗଛ । ପାଣ୍ଡୁ—ପାଣ୍ଡୁର ବର୍ଣ୍ଣ । ୪୬-୨ କଳାପେ—ଏକତ୍ରିତ ହୋଇଥିବା ବା ସୁନ୍ଦର । ସୁମନା ମାଳତୀ-ଫୁଲ ; ଗଣିକା-ବେଶ୍ୟା ଯୁଈ ଫୁଲ । ହର୍ଷକ-ହରଷିତ । ୪୭-୧ ମରାଳ — ହଂସ । ମାନକ—ମାନ୍ୟ ପ୍ରାପ୍ତ ବ୍ୟକ୍ତି । ୪୭-୨ କରପୁଟେଷୁ—ଶୁକ୍ଳବର୍ଣ୍ଣ ଫୁଲରେ । ମଲ୍ଲିକା—ମଲ୍ଲି ଫୁଲ । ସାହକ—ସାହାଯ୍ୟକାରୀ । ୪୮-୧ କରପଲ୍ଲବ—ହସ୍ତପଦାଦ । ଉନ୍ନତ—ଉଚ୍ଚ । କନକ—ସୁବର୍ଣ୍ଣ । ୪୮-୨ କଡବ—ଧୂ ଭୁବ । ୪୯-୧ କଳକଳ—ମୃଦୁଧ୍ୱନି । ୪୯-୨ବୁକ—ହୃଦୟ, ଶ୍ରେଷ୍ଠ । ୫୦-୧ ସୁମନ—ଫୁଲ । ବନ୍ଧୁକ — ଓ୍ୟ ଓ ମଧୁଲ୍ଲି ଫୁଲ ୫୦-୨ କରରଦ—ହାତୀଦାନ୍ତ । ଛନ୍ନ ପ୍ରିୟକ—ପ୍ରିୟଙ୍ଗୁ ଫୁଲ ଓ ପ୍ରିୟ-ବ୍ୟକ୍ତି । ୫୧-୧ କମଳନ୍ଦ—ଭ୍ରମର । ଦନ—ଅରଣ୍ୟ । କାନନ—ବନସ୍ତ । ବନ-ଜଳ । ୫୧-୨ କୁମୁଦ—କଇଁଫୁଲ । ଅମ୍ବୁଜ—ପଦ୍ମ । ୫୨-୧ କବରୀ—କେଶ ; ପ୍ରାବୃଟକାଳ—ବର୍ଷା । ଉଦ୍ୟମକ । ୫୨-୨ ସମ—ସମାନ । ଉଗ୍ରସ୍ତରକ—ଉତ୍ତମଭାବରେ । ୫୩—୧ ବାଚ—କଥା ଅର୍ଥିକ—ପଣ୍ଡିତ ବ୍ୟକ୍ତି । ୫୩-୨ ଶ୍ଳେଷ—ଶବ୍ଦାଳଙ୍କାର ବିଶେଷ । ୫୪-୧ ଲବଲବକ—ତନ୍ନ ତନ୍ନ କରି ବା କ୍ଷଣକୁ କ୍ଷଣ । ୫୪-୨ ଭାବୁକ—ଭାବନାକାରୀ ।

---

## ଦ୍ୱିତୀୟ ଛାନ୍ଦ

୧ମ ପଦ—୧ମ ପାଦ ନିତ୍ୟନାୟକ—ନାରାୟଣ । ୧-୪ ପରଙ୍ଗସ୍ୱା—ଅନ୍ୟର । ୨-୧ ବଲ୍ଲଭୀ—ସ୍ତ୍ରୀ । କୁମୁଦନୀ—କଇଁଫଳ । ବନ୍ଧ—ବଧାତା, ସର୍ଜନାକାରୀ । କମନୀୟ—ସୁନ୍ଦର । କରକ—ଦନ୍ତ, ଡାଳିମ୍ବମଞ୍ଜି, ଘାରକ ଓ ହସ୍ତ । ୩-୧ ଉପନ୍ତ—ଭୁଲ୍ଲି ।

ତରୁ—ଗଛ । ଅମ୍ବକ—ଅମ୍ବ । ୩—୨ କଳକଣ୍ଠ—ହଂସ ଓ କୋକିଳ । ଭରଙ୍ଗ—କଥା । ବଦନ—ମୁଖ । ଭାଷ—କଥା । ବିଧୁ—ଚନ୍ଦ୍ର । ୩-୩ ବାଦକ—ବଜାଇଲା ବାଲା ୩-୪ କାଳକଣ୍ଠ—ଶିବ । ୪-୧ କଳକଣ୍ଠୀ—ଗୋପୀ । ୪-୨ କଇଟଭ—କୈଟଭ ନାମକ ଏକ ଦୈତ୍ୟ । କଇତବ—କପଟ । ପ୍ରଥମ ରସ—ଶୃଙ୍ଗାର ରସ । ୪-୩ ପ୍ରକଟିତା—ପ୍ରକାଶ । ପ୍ରୋକ—ପ୍ରବୋଧ । ୫-୧ କକ୍ଷ—କାଖ । ଉରଜ—ସ୍ତନ । ପୁରୋଦରେ—ପରୁଅରେ ବା ଗୃହଭିତରରେ । ୫-୨ ଅନୁସେବକ—ଦାସର ଦାସ । ୫-୪ କଳୁଭ—ଦଗ । ସରଣୀ—ବାଟ । ପ୍ରଭବନ୍ତକ—ଦର୍ପି ବନ୍ତ । ୬-୧ କନ୍ଦୁକ—ଗୋଲାକାର ଖେଳନା । ୬-୩ କଳାବତୀ—ଚନ୍ଦ୍ର, ସ୍ତ୍ରୀ । ୬-୪ ତେଜକ—ତେଜ ସବୁ । ୭-୧ ସାରଣୀ—ଅକଟ । ଚଉଷଠି—୬୪ ପ୍ରକାର କ୍ରୀଡ଼ା । ପଣକର—ପ୍ରତିଜ୍ଞାକର ବା ସତ୍ୟକର । ୭-୨ ଭର୍ଙ୍ଗିତ—ଅଷ୍ଟା । ଛଳ—ରୋଷ । ୮-୧ କମଳ ଧରଜା—ଯମୁନା । ନୀର—ଜଳ । କୁଞ୍ଜୋଦରେ—କୁଞ୍ଜଗୃହରେ । ୮-୨ କମଳ—ପଦ୍ମ । ବନ୍ଧିକ ଠକ । ୯-୧ ଏକାନ୍ତେ—ଏକୁଟିଆ ସ୍ଥାନରେ । ଲୋକନ—ଦେଖିବା । ୯-୨ କଳତ୍ରର—ସ୍ତ୍ରୀ । ୯-୪ କହ୍ଲାର—ଶ୍ୱେତବର୍ଣ୍ଣର କଇଁ ଫୁଲ । ୧୦-୨ କର୍ଣ୍ଣଧାର—ନାବିକ । ସରିତେ—ଜଳରେ ବା ନଦୀରେ । ମାଳିକ—ମାଳି । ୧୦-୩ ଭଗ୍ନୀ—ଭଉଣୀ । ୧୦-୪ କଞ୍ଜନ—ପ୍ରେମ ବା ଶୃଙ୍ଗାର । ୧୧-୧ ନିଶୀ—ରାତ୍ରି । ବଧୂ—ବୋହୂ । ବନ୍ଧକ—ବନ୍ଦୀ । ୧୧-୨ କଣ୍ଟୁଳ—କୁଷ୍ଠ । ଦୀପିତେ—ତେଜରେ । ରୁଣ୍ଡ—ଏକତ୍ରିତ । ୧୧-୪ ଶବ୍ଦକ—ଅଶ୍ଳୀଳକଥା । ୧୨-୧ କଳାନ୍ତେ—ରତିଶେଷରେ । ମନ୍ଦିରେ—ଗୃହରେ । ଉରେ—ଛାତିରୁ । ଅପସର—ଦୂର ହୁଅ । ବାକି—ବଚନ । ୧୨-୨ ପ୍ରବଲ୍ଲଭ—ରାଜପଥ । କରଣୀ—ମାୟା । ଦୁର୍ଲଭ—ନମିଳିବା । ଅକ୍ରୂରେ—ଦୁଃଖପଣ ନ କର । ଗନ୍ଧକନ୍ଦୁକ—ସୁଗନ୍ଧଯୁକ୍ତ ଖେଳନା । ୧୨-୪ ନସ୍ତୋକ—ନିଶ୍ଚୟ, ସତ୍ୟକଥା । ୧୩-୧ କପିସାଞ୍ଜନ—ଶିବବ୍ରହ୍ମାଦି । ୧୩-୨ ଅନୁରାଗ—ସ୍ନେହ । ୧୩-୪ ଯତକ—ସୁନ୍ଦର । ୧୪-୨ କଳାପୀ—ମୟୂର । ଚାରୁ—ମନୋହର । ତାଟଙ୍କ—କର୍ଣ୍ଣାଳଙ୍କାର । ୧୪-୪ ଲାଳସୀ—ଅଭିଳାଷୀ, ଲୋଭୀ ।

ଉତ୍ଫୁଲ୍ଲକ—ହର୍ଷଦାୟକ । ୧୫-୧ କଳାପୀ—ମୟୂର । ବରହ—ଚନ୍ଦ୍ରିକା । କୁନ୍ତଳ—ମସ୍ତକର କେଶ । କୋରକ—ଗୁଞ୍ଜି ସବୁ ଓ କଢ଼ୀ । ୧୫-୨ କମଳାକ୍ଷ—ପଦ୍ମନେତ୍ର । ଅପଘନ—ଦେହ । ଘନରସେ-ଗାଢ଼ରସରେ । ୧୫-୩ ଦୈବତ—ଦେବାବାଳ । ୧୫-୪ କନ୍ଦଳ—ଏକକିତ ସ୍ୱନ, ପାଣିକେନ୍ଦୁଳୀ ଓ କଳହ କାରଣୀ । ୧୬-୧ କଷ—ହାଣ । ହର—ହରଣକର । ୧୬-୩ କଳି—ସଂଯୋଗ ଓ ଆରମ୍ଭ । ୧୭-୧ କମଳଜ—ବିଧାତା । ମଦନ—କନ୍ଦର୍ପ । ତ୍ରିଲୋକ—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏ ତିନପୁରର ଲୋକ । ୧୭-୨ ଭାନୁଜା—ଯମୁନା । କ୍ରୀଡ଼ା—ଲୀଳା । ଭାନୁଜା—ଶ୍ରୀରାଧା । ଭାନୁଜା—ଚନ୍ଦ୍ରାବଳୀ । ୧୭-୩ ଠାଠିକ—ପୂର୍ଣ୍ଣ ଓ ଉତ୍ତମ ସୁନ୍ଦର । ୧୭-୨ କୃଶମଧ୍ୟା—କ୍ଷୀଣ କଟିଯୁକ୍ତା ନାରୀ । ସୁମାପ୍ତକ—ଉତ୍ତମ ଭାବରେ ମିଳନ ହେବା । ୧୮-୧ କମ୍ବୁପାଣି—ଶ୍ରୀକୃଷ୍ଣ । ତ୍ରିଫୁସ—ତ୍ରିଭଙ୍ଗୀ । ସୁଧୃଷ୍ଟ—ଲମ୍ପଟ ଓ ନାୟକ । ୧୮-୨ ବନ୍ୟସ୍ତ—ବଂଶଇ ଭାବରେ ଦେବା । ୧୮-୩ କମନୀୟ—ସୁନ୍ଦର । ୧୯-୧ ରଥ—ଧରଣୀ । ଭାନୁ—ସୂର୍ଯ୍ୟ । ପ୍ରଭା—ତେଜ । ଦାପ୍ତକ—ଟେକୋବନ୍ତ । ୧୯—୨ କଳାପ—ଚନ୍ଦ୍ର । କୁମୁଦ—କଇଁଫୁଲ । ୧୯-୩ ବଲ୍ଲକ—ଦେଖିବା । ୧୯—୪ କଦା କଦାପି । ପଲକ—ପିଛୁଳା ପକାଇବା । ୨୦-୧ କଳ—କୌଶଳ । କହ୍ଲାର—ଜଳଜାତ ପୁଷ୍ପ । ପୁତ୍ରିକା—କନ୍ୟା । ସାର—ଶ୍ରେଷ୍ଠ । ବାଲ୍ୟଲୀଳା—ବାଲ୍ୟକାଳ ଖେଳ । ପ୍ରଭିପଦକ—ବୃଦ୍ଧି । ୨୦-୨ ବୀତ—ପରିତ୍ୟକ୍ତ, ଗତ । ପୌଗଣ୍ଡ—ଯୁବାକାଳର ପୂର୍ବ ଅବସ୍ଥା । ୨୦-୩ ବିଶିଖ—ଶର । କାର୍ମୁକ—ଧନୁ । ୨୦-୪ ମାହକ—ତୁଲ୍ୟ । ୨୧-୧ ଜନକ—ପିତା । ୨୧-୨ କଣ୍ଠ ଯାର ଦଶ—ରାବଣ । ଜାନକୀ—ସୀତା । ଗୌରି—ପାବଂତୀ ଗୌରବର୍ଣ୍ଣ । ୨୧-୩ କର୍ଦ୍ଦମେ—କାଦୁଅରେ ବା ପଙ୍କରେ । ପତନ—ପଡ଼ିବା । ସାମ୍ୟକ—ସମାନ । ୨୧-୪ ଉପାସିକ—ଉପାସନାକାରୀ ।

---

# ତୃତୀୟ ଛାନ୍ଦ

୧-୧ କଣ୍ଠାଶ୍ଳେଷ—କଣ୍ଠ ଆଶ୍ଳେଷ, କଂସାରି ଶ୍ରୀରାଧା ଓ ଲକ୍ଷ୍ମୀ। ଆସ୍ପଦ—ସ୍ଥାନ। ୧-୨ ସୁରଭି—ଆନନ୍ଦ। ୧-୩ ଅଳି—ଭ୍ରମର। ୧-୪ ଗମକ—ଶବ୍ଦ। ୧-୫ କପାଳଭୃତ୍—ଶିବ। କାମଗୁଣ ଘୋଷ—କନ୍ଦର୍ପ ଧନୁରେ ଗୁଣ ଟଙ୍କାଇବା ଶବ୍ଦ। ଯମକ—ବିଶେଷ ଭାବରେ। ୨-୧ ଉଟଙ୍କେ—ଗଢ଼ିବାରେ। ୨-୨ ରମ୍ଭା—କଦଳୀ। ୨-୫ କମଳ—ପଦ୍ମ। ୨-୧ କଲ୍ଲୋଳେ—ଲହରୀରେ। ଲୋଳେ—ଓହଳେ ବା ଲୋଟେ। କାଳନ୍ଦୀ—ଯମୁନା, ଲଗ୍ନ—ଲଗିବା। ଭିନ୍ନ—ଅଲଗା। କାୟକ—ଦେହ। ୩-୫ କଳାପ—ମୟୂର। ଚାମର—ଚଅଁର। ଏହାର ଅର୍ଥ ମୟୂର ପୁଚ୍ଛ ନିର୍ମିତ ଚଅଁର। ୪-୧ କବରୀ—କେଶଗୁଚ୍ଛ। ଜଳଦ—ମେଘ ୪-୨ ବକ ପାଳି—ବଗସବୁ। ୪-୩ କଉଶିକ-ଇନ୍ଦ୍ର। ୪-୪ କୋଦଣ୍ଡ—ଧନୁ। ୫-୧ କମଳ ଲପନ—ପଦ୍ମମୁଖ। ଭୃଙ୍ଗ—ଭ୍ରମର। ୫-୨ ଅସମ—ସମାନ ନ ହେବା। ପଦ୍ମିନୀ—ପଦ୍ମ ଲତା। ଅବଲୋକ—ଦେଖିବା। ୫-୩ କଳାଶଶୀ—ଚନ୍ଦ୍ର। ୫-୪ ରତକ—ରମଣକାରୀ। ୫-୫ କରଜେ—ନଖମାନରେ। ସମନେ—ଯମକ କିମ୍ବା ସମାନରେ ଅଥବା ଉତ୍ତମ ମନରେ। ୬-୧ ଭ୍ରୂଙ୍ଗ ଭ୍ରୂଲତା। ପିନାକ— ଶିବଙ୍କ ଧନୁ। ୬-୨ କଙ୍କପତ୍ର—ଏକ ପ୍ରକାର ଅସ୍ତ୍ର। ଅପାଙ୍ଗ—କଟାକ୍ଷ। ୬-୩ କଷା—କଥା। ଘାତ—ଘାଆ। ୬-୫ ନେତ୍ର—ଚକ୍ଷୁ। ଚାତୁରୀ—ଚାଲାକିପଣିଆଁ ବା ଚାଳନ। ଅଣିବାରେ—ଚାଳିବା। ୭-୧ କନ୍ଦଳୀ—କଳହ ଯୁକ୍ତ ବା ବିପଦ କାରିଣୀ। ଖଞ୍ଜନ—କଜ୍ଜଳପାତି ପକ୍ଷୀ। ୭-୨ ସରଣୀ—ନଦୀକଳ। ୭-୪ ମୀନ—ମାଛ। ଅପଲକ—ଚକ୍ଷୁର ପିଛୁଡ଼ା ନ ପକାଇବା। ୭-୫ ବଡଶୀ—ବନଶୀ। ୮-୧ ପଲକ—ଆଖି ପିଛୁଡ଼ା। ୮-୨ ଧୈର୍ଯ୍ୟ—ଦମ୍ଭ। ୮-୪ ତୁଲ—ସମାନ। ୮-୫ ଚାରୁ—ସୁନ୍ଦର। ୯-୧ ଛତ୍ର—ଛତା। ୯-୨ କଣ୍ଠୀ—କଣ୍ଠୁରୀ। ଛକ—ମନ ଓ ପଥଗୁଡ଼ିକର ମିଳନ ସ୍ଥାନ। ୯-୩ କର୍ଣ୍ଣାବତଂସ—କର୍ଣ୍ଣର ଅଳଙ୍କାର ବିଶେଷ। ୯-୪

ସୁମନା—ଉତ୍ତମ ମନସ୍କ ସ୍ତ୍ରୀ ନାମ ଓ ଫୁଲ । ଭିରୁକ—ଭିବବାଳଙ୍କ ଲଜ୍ଜା ଭାବିବା କଥା । ୯-୫ ସୁମନା ଗଣେ—ନାରୀ ମାନଙ୍କରେ ବା ଫୁଲମାନଙ୍କରେ । ଅବତଂଶ—ଶିରୋଭୂଷଣ ବା ଶ୍ରେଷ୍ଠ । ଗର୍ବିକ ଗର୍ବକରିବା ବାଲା । ୧୦-୧ ଲଗ୍ନ—କରଜ । ଅରୁଣ ସୂର୍ଯ୍ୟ । ଅରୁଣ ଅଧର—ରକ୍ତ-ବର୍ଣ୍ଣ ଓଷ୍ଠଯୁକ୍ତା ସ୍ତ୍ରୀ । ବନ୍ଧୂକ—ବନ୍ଧୁଲିଫୁଲ । ୧୦-୨ କବଳ—ଭୋଜନ । ତାମ୍ବୂଳ—ପାନ । ବ୍ୟାଜ—ଛଳ । ପାତ—ପଡ଼ିବା । ହତ—ବିନାଶ । ଫଳକ—ଫଳ । ୧୦-୩ କଳିବା—ଭାଙ୍ଗିବା । ୧୦-୪ ଭାରଥିକ—କଥା ୧୦-୫ ଗଣ୍ଡ—ଗାଲରେ । ପ୍ରତିବିମ୍ବ—ଛାଇ । ନାଗରଙ୍ଗ—ନାରଙ୍ଗ । ରଙ୍ଗ—ରକ୍ତବର୍ଣ୍ଣ । ଅନ୍ତକ—ଶେଷ କରିବା । ୧୧-୧ ଦ୍ୱିଜେନ୍ଦ୍ର—ଦନ୍ତ ସବୁ । ହାସ—ଝୁଲିବା । ମୌକ୍ତିକ—ମୁକ୍ତା । ୧୧-୪ ଶତ୍ରୁକ—ଓଠ । ୧୧-୫ । ମଧୁକରକ—ଭ୍ରମର ଓ ମନ୍ତ୍ର-ମାତ୍ର । ୧୨-୧ ଧୂର୍ତ୍ତ—ଶଠ । ବାଣୀ—ସ୍ୱର । ୧୨-୨ କରଯୀନ୍ଦ୍ରା—ହସ୍ତ ତୁଳନା । ପିକ—କୋଇଲି । ୧୨-୫ ଛଳକ—ଛବବ । ୧୩-୧ କମ୍ବୁ—ଶଙ୍ଖ । ୧୩-୩ କସ୍ତକର—ହାତର ଥୋର ପାହାର । ୧୩-୪ ସାମ୍ୟ—ସମାନ । ୧୩-୫ କର—ହାତ । ପାଦନ୍ୟାସ—ପାଦ ତୁଳନା । ମନ୍ଥରେ—ଧୀର ଭାବରେ । ୧୪-୧ ଅତୁଲ୍ୟ—ହସ୍ତାଳଙ୍କାର ଏବଂ ତୁଳନା ନ ହେବା ଖଞ୍ଜନ—ଖଞ୍ଜନ ବାଳ । ୧୪-୨ କଞ୍ଜ—ପଦ୍ମ । ହସ୍ତ—ହସ୍ତ । ତାଡନ—ଶାସନ । ତାଡ଼—ବାହୁର ଅଳଙ୍କାର । ଉଦକ—ଜଳ । ୧୪-୪ କଳକାବନ୍ତ—କଡ଼ୀ ଧରିବା ଅବସ୍ଥା । ୧୪-୫ କରାଙ୍ଗୁଳି—ହାତ ଅଙ୍ଗୁଠି । ମୁଦ୍ର—ଅଙ୍ଗୁଳିର ଅଳଙ୍କାର । ମୁଦ୍ରିତ—ରୁନ୍ଧିଲା, ବନ୍ଦ କରିଲା । ମୁଦ୍—ମନ୍ଦ କରିବା । ୧୫-୧ ପ୍ରାସାଦକ—ଦେଉଳ, ଜଗତୀ । ୧୫-୨ କଟକରେ—ପାଦର ଅଳଙ୍କାରରେ । କବୁଣ୍ଡିତ—କାତର ପଣ । କୃଶ—ସରୁ । ୧୫-୪ ସ୍ରକ—ସଜ । ୧୫-୫ କୁଣ୍ଠ ଘାତକ—ମାତ୍ରନ୍ତ । ୧୬-୧ ଅଞ୍ଚଳ—ଲୁଗା ପିଧାନ—ଅବରଣ ବା ଘୋଡ଼ାଇବା । ୧୬-୨ କରାଳ—ବଡ଼, ପ୍ରବଳ ବା ଭୟଙ୍କର । ଗୋପ୍ୟ - ଲୁଚିବା । ମଧ୍ୟମ—ମଧ୍ୟମ । ଉମରୁମଧ୍ୟା କ୍ଷୀଣ କଟୀଯୁକ୍ତା ସ୍ତ୍ରୀ । ଛନକ—ଛାଁଇଁ । ୧୬-୩ କଣ—ସାମାନ୍ୟ । ୧୬-୪

ପାଭଙ୍କ—ପଢ଼ିବା । ୧୭-୧ କପାଳୀ—ଭାଗ୍ୟବନ୍ତ; କପାଳ ! ବନ୍ତଅ । ଲୁଣ୍ଠକ—ପରଧନ ହରଣକାରୀ ଲୋକ । ୧୭-୨ ହର—ହସ୍ତୀର ବନାଶ କାରୀ । କେଶରୀ—ସିଂହ । ବନ୍ଦକ— ବନ୍ଧନ । ୧୮-୧ କକ୍ଷପାତ—କାଖ ପଡ଼ିବା ସମୟରେ । ରୋମାବଳୀ—ରୋମସବୁ । ୧୮-୩ କଦା—କଦାପି । ୧ -୪ ବଳ—ଗାତ । ୧୮-୫ ମଣ୍ଠୀକ—କଟିବସ୍ତ୍ର । ଶତ୍ରୁପକ—ରଞ୍ଜିତ । ୧୯-୧ ତ୍ରିବଳୀ—ଉଦରରେ ତନଗୋଟି ରେଖା ଚହ୍ନ ବଶେଷ । ତ୍ରିବାରେ—ତନି-ଥରରେ । ତ୍ରିଲୋକ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଲୋକ । ୧୯-୨ କରଶାଖା—ଅଙ୍ଗୁଳି । ଅନାମିକା—କନିଷ୍ଠାଙ୍ଗୁଳି ପାଖରେ ଥିବା ଅଙ୍ଗୁଳି । ୧୯-୩ ଲୋକ ନ ଦେଖିବା । ୧୯-୪ ଫୁଟି—ଅଙ୍କ ପଢ଼ିବା । ୧୯-୫ କମଠ—କଇଁଛ । ଜଙ୍ଘନ—ଜଙ୍ଘ । ଆକ୍ଷେପକ—ଆକର୍ଷଣକାରୀ, ନିନ୍ଦାକାରୀ ଓ ଦୁଃଖ ଭୋଗକାରୀ । ୨୦-୧ କରଭ—ହସ୍ତ ସମସ୍ତ । ରୁରୁ—ସୁନ୍ଦର । ଉରୁ—ଜଙ୍ଘ । ୨୦-୨ କଦଳ କଦଳୀ—ଅତି ଉତ୍ତମ କଦଳୀ ଗଛ । ଅର୍ଗଳୀ ଅର୍ଗଳୀ—ଖିଲ ଦିଆ ଯାଇଥିବା ଅର୍ଗଳୀ । ୨୦-୩ଯୌବନ • ତକ୍ଷକ—ଯୌବନ ରୂପକ ବଢ଼େଇ । ୨୦-୫ ଲୁଦ୍ଧ—ଲୁଦ୍ଧଲବେଳେ । ମହୋତ୍କ୍ଷ୍ପଳକ- ତେଜ । କନକ—ସୁବର୍ଣ୍ଣ । ୨୧-୨ କରଣେ—କରିବାରେ । ୨୧-୩ କର୍ଣ୍ଣ—ନାଆଁ । ୨୧-୫ କଣ୍ଟା ଦଳୋଦରେ—କଣ୍ଟାପତ୍ର ଭିତରେ । ତ୍ରପା—ଲଜ୍ଜା । କେତକ-କଅଗଛ । ୨୨-୧କୃତ୍ତିବାସ—ଶିବ । ନିତମ୍ବ—କଟିର ପୃଷ୍ଠଭାଗ । ୨୨-୨ ସର୍ବଜ୍ଞ ସୁତ—ପଣ୍ଡିତଙ୍କ ପୁଅ । ୨୨-୪ ଧ୍ରୁବପଦ - ସତ୍ୟକଥା । ୨୨-୫ କଳାବତୀ—ସୁନ୍ଦରୀ ସ୍ତ୍ରୀ, ସୁଲକ୍ଷଣ ଯୁକ୍ତା ସ୍ତ୍ରୀ । ଚରମ ପ୍ରଭା—ପିଠିର ତେଜ ଓ ବର୍ଣ୍ଣ । ମର୍ଦ୍ଦକ—ମର୍ଦ୍ଦନକାରୀ । ୨୩-୧ କମଳା—ଲକ୍ଷ୍ମୀ । ନବାବୟବ ନୂତନ ଦେହ । ଲବଣୀ—ଲହୁଣୀ । ହଂସକ—ନାଦକାରୀ । ୨୩-୩ ଶ୍ରୁତିକି—କର୍ଣ୍ଣଦେଇ ଶୁଣିବା । ୨୩-୪ ଶୁକ—ଶୁଆ ଚଢ଼େଇ । ମୂକ—ତୁଣ୍ଡ ନ ଫିଟିବା । ୨୩-୫ ଦେହଳୀ - ଦ୍ୱାରବନ୍ଧ । ପ୍ରତିପାଳକ—ପ୍ରତିପାଳନକାରୀ । ୨୪-୧ କମଳ ଧରଜା—ଯମୁନା ନଦୀ । ୨୪-୨ କଲ୍ୟାଣୀ—କଲ୍ୟାଣ କାରିଣୀ, କୁଙ୍କୁମ, ଅଁଳା—ଚନ୍ଦନ

ଓ ଗୋମୟ ପ୍ରଭୃତି ଦ୍ରବ୍ୟ । ୨୪-୩ କାଳିନ୍ଦୀ ବନ୍ଧୁରକ—ଯମୁନାବନ୍ଧୁ ଶ୍ରୀକୃଷ୍ଣ ।

---

## ଚତୁର୍ଥ ଛାନ୍ଦ

୧-୧ ମିଳକ—ମିଳନ । ୧-୨ ନବୀନା ତିଳକ—ଯୁବତୀ ଶ୍ରେଷ୍ଠା । ୨-୧ ଦର୍ଶୁକ—ଦେଖାଇ କର । ୨-୨ କମଳ—ପଦ୍ମ । ଗୃନ୍ତୁଅଛ—ଚଳାଉଅଛ । ପୁଣ୍ଡରୀକ—ପଦ୍ମ ଓ ପ୍ରଧାନ ହସ୍ତୀ । ୩-୧ କର୍କ—ଜଳ । ସମା—ସମାନ । ପ୍ରତିବାଦକ—ବିରୋଧୀ । ୩-୨ ଇଙ୍ଗିତ—ଥଣ୍ଟା । ୪-୧ କଳା—ଅଂଶ । ଜବାକ—ବାକ୍ୟହୀନ । ୪-୨ କମଳେ—ଜଳରେ । ମଦ୍ଧତେ—ବୁଦ୍ଧତେ । ଭଦ୍ରା—ଏକାଦଶୀ । ପ୍ରସାରକ—ପ୍ରସାରଣକାରୀ । ୫-୧ ଘନରସ—ମେଘଜଳ ଓ ଗାଢ଼ରସ । ୬-୧ କମଳନୀ—ପଦ୍ମ ଓ ଲକ୍ଷ୍ମୀ । ୭-୧ ପାଳ—ମାନିବା । ଛଳକ—ଛଳବାକ୍ୟ, ଛଳ କରିବା । ୭-୨ ନାୟକ—ସ୍ୱାମୀ । ୮-୧ କଇରବ—କଇଁଫୁଲ । ଅଶ୍ଳେଷକ—ଅଳିଙ୍ଗନ ଓ ମିଳନ । ୮-୨ ଭାନୁଜା—ଯମୁନା ଓ ବୃଷଭାନୁ ସୁତା । ୯-୧ ବିକ୍ଷେପକ—ଗୃହଁଲ୍ୟକାରୀ ଓ ନାବିକ । ୯-୨ କଲ୍ଲୋଳ—ଲହରୀ ଓ ପ୍ରେମ । ସମ୍ମତକ—ରାଜିହେବା ବ୍ୟକ୍ତି । ୧୦-୨ ଚମ୍ପାସ୍ତବ—ଚମ୍ପାଫୁଲ ଭୁଲି ଦେବା । ୧୧-୧ କୁବଳୟ ଫଳ—ପୃଥ୍ବୀ । ଖୋଜକ—ଖୋଜିବାବାଲା । ୧୧-୨ ବନାୟକ—ବ୍ରହ୍ମାଣ୍ଡର ସ୍ୱାମୀ ଅର୍ଥାତ୍ ଶ୍ରୀକୃଷ୍ଣ । ୧୨-୧ ବିଲୋକ—ଦର୍ଶନ । ୧୩-୧ କଚ୍ଛପ—କଇଁଛ । ମୀନ—ମାଛ । ନଳିନ—ପଦ୍ମ । ଶଇବାଳ—ଶିଉଳ । କୋକ—ଚକୋର ପକ୍ଷୀ । ୧୩-୨ କବିବାରେ—ଜଳରେ । କଳବାରେ—କଳନା କରିବାରେ । ଭୀତକ—ଭୟଯୁକ୍ତ । ୧୪-୧ କଇବର୍ତ୍ତି—କେଉଟ ବା ନାବିକ । ଅରୋହୀ—ଚଢ଼ି । ଭେଳକ—ଭେଳା । ୧୪-୨ ବରାଟକ—କଉଡ଼ି । ୧୫-୧ କଥକ—କହିବା । ୧୫-୨ କବନ୍ଧ—ମସ୍ତକହୀନ ଥିବା ଦେହ । ଯୂପାର—ବିଶେଷ ଓ ଅର୍ଗଳୀ କାଷ୍ଠ । ୧୬-୧ କଳ—କଙ୍କଣ, ଯନ୍ତ୍ର,

ସୁନ୍ଦର ଓ କୌଶଳ । ଉଦକ—ଜଳ । ୧୬-୨ ଧ୍ୱନି—ଶବ୍ଦ । ପ୍ରସାରକ—ଶୁଣାଇବା, ପ୍ରକାଶକ, ବିସ୍ତାର କରିବା । ୧୭-୧ କମଳ—ପଦ୍ମ ଓ ମେଘ । ବିଦ୍ୟୁତ – ବିଜୁଳି । ସଞ୍ଚକ—ଦୃଶ୍ୟହେବା । ୧୭-୨ କଳାପୀ—ମୟୂର । କୁନ୍ତଳ - ମୟୂରର କେଶ ଓ ପୁଚ୍ଛ । ତମକ—ନୃତ୍ୟ । ୧୮-୧ କରଣେ—କରିବା ଦ୍ୱାରା । ଉତ୍ପାଟ—ବିନାଶ । ଚଣ୍ଡ—ଅସ୍ପର୍ଯ୍ୟ । ପ୍ରାବୃଟ୍ନ—ବର୍ଷାକାଳ । ୧୮-୨ କମଳାପତି—ଶ୍ରୀକୃଷ୍ଣ, ବରୁଣ । ଦୁଦ୍ଧଷୀ—ଦୁଦ୍ଧତା । ଉଦ୍ୟୁକ—ପ୍ରକାଶକ । ୧୯-୧ କଥଣାସୁ-କହିବା । ୧୯-୨ ଉତ୍ସୁକ—ଉତ୍କଣ୍ଠ ହେବା । ୨୦-୧ କୌଶଲ୍ୟା ସୁତ—ଶ୍ରୀରାମଚନ୍ଦ୍ର । ମଗ୍ନକ—ମଗ୍ନାଇବା ବ୍ୟକ୍ତି ।

---

## ପଞ୍ଚମ ଛାନ୍ଦ

୧-୧ କଳନ୍ଦ ସୁତା—ଯମୁନା । ରମା—ନତନା ଯୁବତୀ । ୧-୨ କମଳ—ପଦ୍ମ । କଳଧର—ମେଘ, ଜଳ । ଭ୍ରାମ୍ୟକ—ଭ୍ରମ । କମଳା-ବାସୀ—ଲକ୍ଷ୍ମୀ ଓ ବିଷ୍ଣୁ । ଉଦ୍ଯମକ—ଏକ ସ୍ଥାନରେ ପ୍ରତ୍ୟେକ ଶବ୍ଦର ଏକାଧିକ ବାର ବ୍ୟବହୃତ ହେବା । ୧-୪ କଣ୍ଠ ଅଣ୍ଡ—ସମାନ, ଅଂଶ ଓ ନିର୍ମଳାଦ ଏବଂ ମସ୍ୟ କଚ୍ଛପାଦ । ଶ୍ଳେଷ—ଶବ୍ଦାଳଙ୍କାର ବିଶେଷ, ଆଲିଙ୍ଗନ ଓ ସଂଯୋଗ । ଅଶ୍ଳେଷ - ସଂଯୁକ୍ତ, ମିଳନ ଓ ଆଲିଙ୍ଗନ । ଉତ୍ପ୍ରେକ୍ଷା—ଅର୍ଥାଳଙ୍କାର ବିଶେଷ । ରୂପକ—କାବ୍ୟାଳଙ୍କାର ବିଶେଷ । ୨-୧ କଦମ୍ବ–କଦମ୍ବ ଫୁଲ । ରୁଚିରୁ—ସୁନ୍ଦର । କୂଳସ୍ଥେ—ଜଳକୂଳରେ ବା ଗୃହକୁଳାଦରେ । ପ୍ରଭାତ—ସକାଳ । ସାନୁ—ପର୍ବତର ଉପରସ୍ଥ ଭୂମି ବା ସ୍ଥାନ । ସପୁଲକ—ସରୋମାଞ୍ଚ ବା ହରଷ ଯୁକ୍ତ, ଉଲ୍ଲାସ ମନ, ଲୋମଟାଙ୍କୁରିବା ଓ ପଦ୍ମ । ୨-୨ କୁଚଯୁଗ—ସ୍ତନଦ୍ୱୟ । ଅଙ୍ଗନ—ଦେହ । ଜଳସ୍ରବ ଝର ବହିବା । ମଧୁଦ୍ରବକ—ମଧୁ ଦୈତ୍ୟର ବିନାଶକାରୀ ଶ୍ରୀକୃଷ୍ଣ ଓ ଭ୍ରମର । ୨-୩ କରୁଣା ସିନ୍ଧୁ—ଶ୍ରୀକୃଷ୍ଣ । ଦର୍ଶକ—ଦେଖିବା ବ୍ୟକ୍ତି ।

କରନ୍ତି ରଡ଼—ଚିତ୍କାର କରିବା । ୩-୧ କଇତବେ—କପଟରେ ବା ଗୁପ୍ତରେ । ଅବଲମ୍ବକ—ଆଶ୍ରୟକାରୀ । ୩-୨ କର୍କଶ-କଠିନ । ବୀଡ଼ିତ—ଲଜ୍ଜିତା । କାନ୍ତେ—ସ୍ୱାମୀକୁ । ୩-୩ ଲକ୍ଷକ—ଲକ୍ଷ୍ୟକାରୀ । ୩-୪ କଇବଲ୍ୟକୃତ୍ତି ପୁର—ପୁରୁଷୋତ୍ତମ ଅର୍ଥାତ୍ ଶ୍ରୀକୃଷ୍ଣ । ମୀନ—ମାଛ । ରକ୍ଷକ—ରକ୍ଷାକର୍ତ୍ତା । ୪-୧ ହରି—ଶ୍ରୀକୃଷ୍ଣ । ଦୃକ—ନେତ୍ର ବା ଦୃଷ୍ଟି । କଣ୍ଟକିତ—କଣ୍ଟକିତ ପୁଲକିତ ହୋଇ । ୪-୩ ନଳ—ନଳ ଓ ସବୁ । ଶକ—ଶବର ବା ମ୍ଳେଚ୍ଛ ଜାତିର ଲୋକ । ୪-୪ ଉରଜ-ସ୍ତନ । ୫-୧ କନକଗିରି-ସୁନା ପର୍ବତ । ବେନି—ଦୁଇ । ଦୀନବନ୍ଧୁ—ଶ୍ରୀକୃଷ୍ଣ । ଭାବେ—ପ୍ରେମରେ । ୫-୨ କର-ହାତ । ବିଶ୍ୱସୃକ-ବିଧାତା । ୫-୩ କଦା-କଦାପି । ବଳାହକ—ମେଘ ବା ଜଳ । ୫-୪ କଳାପ-ମୟୂର ବା ସମୂହ । ଗମି—ଗମନକରି । ଅଧୋଭାଗେ-ତଳକୁ । ଓକ—ମୁଖ । ୬-୧ କଲେ-ଗଲେ । ଅଙ୍ଗଦେଶେ-ଦେହରେ ନୃପ-ଅର୍ଗଳୀ । ସ୍ତବେ-ସର୍ଜନା କରିବା ବା ଗଢ଼ି ଥିବା । ମନସିଜ ସିଜକ-କନ୍ଦର୍ପ ସିଜା । ୬-୨ କମଠ-କଇଁଛ ତୁଲ୍ୟ ବା ଏକନିତ । ଭାବିନୀ-ଭାବବତୀ ସ୍ତ୍ରୀ । ୬-୩ କରୁଣା ଅଧିକାରୀ-ଦୟାର ଅଧିକାରୀ ବା ମାଲିକ । ସୂଚକ-ସଙ୍କେତ ବା ଚିହ୍ନ । ୬-୪ ଯାଚକ-ମାଗିଲାବାଲା । ୭-୧ କଳଧଉତ-ସୁନା । ବଲ୍ଲୀ-ଲତା । ମଧୁକର-ଭ୍ରମର । ପନ୍ତି-ସମୂହ । ମଧୁକୋଷ-ମହୁ ରହିବା ସ୍ଥାନ । ସଅିକ-ସଅିଯୁକ୍ତକାରୀ । ୭-୨ କବିକଳ୍ପ-କବିଙ୍କ କଳ୍ପନା । ୭-୩ ଶୁଦ୍ଧ ଦେହକ-ପବିତ୍ରଦେହାକୁ । ୭-୪ ଦେବାଧିଦେବ-ଶିବ (ଲୁଚ ପ୍ରତି ଲକ୍ଷ) । ପ୍ରତିଷ୍ଠା-ସ୍ଥାପନ । ଅତିରେକ-ଅତ୍ୟନ୍ତ । ୮-୧ ଯୌବନ କୁମ୍ଭ-ଯୌବନ ରୂପ କଳସୀ । ଶୋଭନ-ସୁନ୍ଦର । ବିଚିତ୍ର-ଆଶ୍ଚର୍ଯ୍ୟ ବା ଭିନ୍ନ ଭିନ୍ନ ରଙ୍ଗରେ, ଭିନ୍ନ ଭିନ୍ନ ପ୍ରକାରରେ ଚିତ୍ରକ-ଚିତା । ୮-୨ ପଲ୍ୱଳ-କ୍ଷୁଦ୍ର ଜଳାଶୟ । ଉଦକ-ଜଳ । ୮-୩ ହସ୍ତୀପକ-ମାହୁନ୍ତ । ୮-୪ କରଜ-ନଖ । ଝପ-ଝପିବା । ଗାଢ ବ୍ୟାପକ-ଗାଢ କରିଲା ବାଲା । ୯-୧ କଳପ୍ରିୟ-ବୀଣାପଣ୍ଡପ୍ରିୟ ବା ଅବ୍ୟକ୍ତ ମଧୁର ଧ୍ୱନିଯୁକ୍ତା କମ୍ବା ବୀଣା ତୁଲ୍ୟ ସ୍ୱରଯୁକ୍ତା ରମଣୀ । ସଞ୍ଜାତ-ଶୋଭିତ । ଭୂମ୍ବୀ-ଲାଭ, ପିତୃ ଏବଂ ଲୁଚ କମ୍ବା ସୀତାର । ୯-୨

ରାଗ-ସଙ୍ଗୀତରେ ସ୍ୱର, ଇଚ୍ଛା ଓ ସ୍ନେହ । କେଦାରେ-ହୃଦୟରୂପକ କ୍ଷେତ୍ରରେ ବା ଯେ କୌଣସି ବ୍ୟକ୍ତିର ମନରେ । ଘର୍ଜକ-ଉଠିବା । ୯-୩ ବଣିକ-ବଣିଆ । ୯-୪ ସ୍ୱର୍ଣ୍ଣକର-ହୁଣ୍ଡି । ଜଘାସନ-ଜଘରୂପ ଆସନ । ଅକାଶୁ-ଶୀଘ୍ର, ଶର ଓ ଶୀଘ୍ର ଗମନ କରି ଯିବାରୁ । ୧୦-୨ କପାଳ-ଶିବ । ନେତ୍ରାନଳେ-ଚକ୍ଷୁର ଅଗ୍ନିରେ । ଜ୍ୱଳ-ପୋଡ଼ି ହୋଇ, ଭସ୍ମ ହୋଇ । ଦର୍ପକ—କନ୍ଦର୍ପ । ୧୯-୨ ମଞ୍ଜୁ-ସୁନ୍ଦର । ରଞ୍ଜୁ-ରଞ୍ଜିତ କରି । କନ୍ଦୁକ-ଖେଳିବାର ପେଣ୍ଡୁ । ୧୦-୩ କମଳା ଲକ୍ଷ୍ମୀ । ଉରେ-ଛାତିରେ । ତାର୍କ୍ଷି-ଘୋଡ଼ାଇ । ଅଂଶୁକ-ବସ୍ତ୍ର । ୧୦-୪ କଳିଶ୍ୱରୀ-କିଶୋରୀ ଅର୍ଥାତ୍ ଯୁବତୀ,ଅଥବା ଜଗତ ଈଶ୍ୱରୀ ଲକ୍ଷ୍ମୀ । କାଳ ବଞ୍ଚକ—ସମୟ ବଞ୍ଚିବା କ୍ଷମା କନ୍ଦର୍ପ ରୂପ କଳାର ବିନାଶ କାରୀ । ୧୧ ୧ କାମ-କନ୍ଦର୍ପ । ସମ୍ପୃଟକ-ଫରୁଆ । ୧୧-୨ ବୃନ୍ଦେ-ବୃନ୍ଦବା ଯନ୍ତ୍ରରେ । ବଳ-ବଡ଼ଆ ବା ଅଧିକ । ଅବଲୋକ-ଦେଖିବା । ୧୧-୩ ଗଜରିକ-ଶ୍ରେର । ୧୧-୪ କରିଗତି-ହସ୍ତୀ ତୁଲ୍ୟ ଗମନ । ୧୨-୧ କଳ୍ପତରୁ-କଳ୍ପବୃକ୍ଷ ବା ଆଶା ପୂରଣକାରୀ ବୃକ୍ଷ । ହରିଚନ୍ଦନ-ସ୍ୱର୍ଗୀୟ ଅପୂର୍ବ ଫୁଲ । ଦୃଶ-ନେତ୍ର । ଧର-ଧାରଣ କରିବା ବ୍ୟକ୍ତି । ୧୨-୨ କଳ୍ପି-କଳ୍ପନା କରି ବା ବାଞ୍ଛାକରି । ତରୁ-ବୃକ୍ଷ । ପତ୍ରାକ୍ଷର-ପତ୍ରର ଲେଖା କ୍ଷମା ଶକ୍ତ । ଦଳଶୂକ-ସର୍ପ । ମୂକ-ମୁଖ ନ ଫିଟିବା ବ୍ୟକ୍ତି । ୧୨-୩ କରଣେ-କରିବାରେ । ରକ୍ଷକ-ରକ୍ଷାକାରୀ ଲୋକ । ୧୨-୪ ସୁରନାୟକ-ଇନ୍ଦ୍ର ବା ସର୍ବଶ୍ରେଷ୍ଠ ବ୍ୟକ୍ତି । ୧୩-୧ କପର୍ଦ୍ଦିବଧୂ— ଗଙ୍ଗା । ଶମ୍ଭୁ-ଶିବ । ଦୀପକ-ଦୀପ୍ତିକାରକ ଓ ଉତ୍ତେଜକ । ୧୩-୩ କମଳ—ପଦ୍ମ । ପୂଜକ-ସେବକ । ୧୩-୪ କଲ୍ମଶ—ପାପ । ବର ଦାୟକ-ବରଦେବା ବାଲା । ୧୪-୧ ଢଳା—ଶୃଙ୍ଗାର । ଲାଲସୀ-ସ୍ନେହୀ । ଅଦ୍ଭୁତ-ଆଶ୍ଚର୍ଯ୍ୟ । ଅପାଙ୍ଗୁ-କଟାକ୍ଷରୁ । ତରଙ୍ଗ—ଲହରୀ । ଧାରକ-ଧାରଣକାରୀ । ୧୪-୨ କବଳ-ଭକ୍ଷଣ । ଅଶେ-ଇଚ୍ଛାରେ । ଶୈବାଳ-ଶିଉଳି । ମିଥୁନ-ସ୍ତ୍ରୀ ଓ ପୁରୁଷର ଯୁଗଳ । ଚକ୍ରବାକ—ଚକୋର ପକ୍ଷୀ । ୧୪-୩ 'କକୁସ୍ଥ ବଂଶୀ-ଶ୍ରୀରାମ-ଚନ୍ଦ୍ରଙ୍କ ବଂଶଧର । ଘାତକ-ପୀଡ଼ାଦାୟକ । ମଜ୍ଜନ-ବୁଡ଼ିବା, ସ୍ନାନ କରିବା । ୧୪-୪ ଜୀବଲୋକେ—ଜୀବ ଥିବା ଯାକେ । କ୍ଷାଳକ-କ୍ଷାଳିବା ।

୧୫-୧ କଟକ—ନଗର ବା ପୁର । ଶୋଭଙ୍ଗ-ଶୋଭାକାରଣୀ । ତିଲକ-ଶିରର ଭୂଷଣ ବା ଶ୍ରେଷ୍ଠ । ୧୫-୨ କଉଷେୟ—କଷାବସ୍ତ୍ର କିମ୍ବା ରେଶମ, ପୀତ-ହଳଦିଆ । ଛବ-ଛତା । ଯୁଗ୍ମ-ଦୁଇ । ବର୍ତ୍ତୁଳ-ଗୋଲାକାର । ୧୫-୩ ବେନି-ଦୁଇ । ଉନ୍ମତ୍ତ—ପାଗଳ । ଉନ୍ମତ୍ତ ନ ହୋଇ ଉନ୍ନତ ହୋଇଥିଲେ, ଉଚ୍ଚ ବା ବଡ଼ । ଠାଠିକ—ବର୍ତ୍ତୁଳ ଓ ସୁନ୍ଦର । ୧୫-୪ ଚକ୍ରବର୍ତ୍ତୀ-ସମ୍ରାଟ ବା ଶ୍ରେଷ୍ଠ ରାଜା । ଯୁବାବୃନ୍ଦେ-ଯୁବାମାନଙ୍କୁ । ସନ୍ତକ-ଚିହ୍ନ, ଉପହାର ଓ ନିଦର୍ଶନ । ୧୬-୧ କଣ୍ଠୀରବ କଣ୍ଠୀ - କୋକିଳର କଣ୍ଠସ୍ୱର ପ୍ରାୟ ସୁମଧୁର ସ୍ୱରଯୁକ୍ତା ସ୍ତ୍ରୀ । ଶୋଭଦ୍ୱନ୍ଦ୍ୱ-ଦୁଇ ଶୋଭା । ୧୬-୨ କଣ୍ଠୀରବ—କଣ୍ଠ ଦେଶର ପରେ ବା କଣ୍ଠ ଶବ୍ଦର ପରେ । ନିଶାଣ-ନାଗରା ଓ ନିଦର୍ଶନ । ବାନା—ପତାକା । ୧୬-୩ କରଣୀ-କରିବା ଦ୍ୱାରା । ୧୬-୪ ବାଦକ—ବାଦ୍ୟଯନ୍ତ୍ର । ୧୭-୧ କଳକଣ୍ଠୀ—କୋକିଳ କଣ୍ଠ ତୁଲ୍ୟ ସ୍ୱରଯୁକ୍ତା ସ୍ତ୍ରୀ । ତରୁ-ଗଛ । ଉଭୟ-ଦୁଇ । ସ୍ତବକ-ଫୁଲର ପେଣ୍ଡା ବା ଥୋପା । ୧୭-୨ ନିଦର୍ଶନ—ଚିହ୍ନ । ପାଣି-ହାତ । ପରଶରେ-ଛୁଇଁବାରେ; ଲଗିବାରେ । ୧୭-୩ କଲ୍ମଷ—ପାପ । ସୀତା-ଲକ୍ଷ୍ମୀ, ନବାତ । ଅର୍ଥିକ—ଅଶ୍ରୟ କରିବା ବ୍ୟକ୍ତି । ୧୭-୪ କଳ-ଶବ୍ଦ । ଅଣ-ଅଣା ବୃନ୍ଦେ-ପଲେ କିମ୍ବା କେତେଗୁଡ଼ିଏ । ଚଞ୍ଚରିକ-ଭ୍ରମର । ୧୮-୧ କରସ୍ଥ—ହସ୍ତରେ ଥିବା । ଦ୍ୱନ୍ଦ୍ୱ-ଦୁଇ ଓ କଳହ । ସୁଧାରନ୍ତେ-ସୁଝନ୍ତେ । ଦୈତ୍ୟ-ରାକ୍ଷସ ସବୁ । ଦୟିତ-ନାୟକ ବା ସ୍ୱାମୀ ଅଧର୍ଷକ—ହିଂସାଶୂନ୍ୟ । ୧୮-୨ କଳନ-ଗଣନା । କାଳ-ଯମ ଓ ସମୟ । ଦଣ୍ଡେ-ଠେଙ୍ଗାରେ ଓ ସମୟରେ । ହରି-ହରଣକାରୀ, ଶ୍ରୀକୃଷ୍ଣ । ହରି-ସିଂହ, ମର୍କଟ ଓ ଶ୍ୱାନ ପ୍ରଭୃତି । ଜାଗରୂକ—ଚେତିଥିଲ । ୧୮-୩ କଲେବର-କରିବା ଦ୍ୱାରା । ୧୮-୪ କଳେବର—ଦେହ ବା ସର୍ବାଙ୍ଗ । ଶିର-ମୁଣ୍ଡ । ଭଲ-ଅଲଗା । ୧୯-୧ କଦଳୀ ଉରୁ—କଦଳୀ ଗଛ ତୁଲ୍ୟ ଜଙ୍ଘ ଯୁକ୍ତା ସ୍ତ୍ରୀ । ଜଗତ୍ତ୍ରୟରେ-ବ୍ରହ୍ମାଣ୍ଡକୁ ଜୟ କରିବାକୁ । ସକଳକ-ସକଳ କରିବା । ୧୯-୨ କର୍କ—ଶ୍ରେଷ୍ଠ କଳସ । ତୋରଣୀ-ଫାଟକ । ପକ୍ଷ-ପାର୍ଶ୍ୱ । ୧୯-୩ କଟକ—ପୁର । କର୍କ-ସୌନ୍ଦର୍ଯ୍ୟ । ସରସ୍ତକ-ପରିପକ୍ୱ ବା ଶ୍ରେଷ୍ଠ, ଉତ୍ତମ ଓ ପଦ୍ମ । ୧୯-୪ ହିମବେଳ—ଶିଶିର କାଳ ପ୍ରବେଶ

ହେଉଛନ୍ତି । ହରେ-ଦେହ ଓ ଶ୍ରୀ । କାମ୍ୟକ—କାମନା । ୨୦-୧ କଳ୍ପକେ -ଏକ କଳ୍ପରେ ଅର୍ଥାତ୍ ବ୍ରହ୍ମାଙ୍କ ଏକ ଦିବସରେ ବା ବହୁ କାଳରେ । ପ୍ରାସାଦ-ଅଟ୍ଟାଳିକା । ବେନି-ଦୁଇ । ବକ୍ଷ-ହୃଦୟ, ଛାତି । ତକ୍ଷକ-ବଢ଼େଇ, କାରିଗର ଓ ନାଗ ବିଶେଷ । ୨୦-୨ କମ୍ପିନ୍ଦ୍ର ବାହନ ମଣି -ଇନ୍ଦ୍ର ନୀଳମଣି । ପାଦଛକ-ପାହାଚ ସବୁ । ୨୦-୩ କକ୍ଷା—କୋଠରି ଓ ଲୁଗାକାନି । ନେତ୍ର-ଆଖି । ପଥିକ—ବାଟୋଇ ଲୋକ । ୨୦-୪ ବିଶେନେ-ସମସ୍ତଙ୍କୁ । ମେଳକ-ମିଳନ ବା ଏକତ୍ର । ୨୧-୧ କମନୀୟ—ଅତି ସୁନ୍ଦର । ଅବନୀ-ପୃଥିବୀ । ଶିରି-ଲକ୍ଷ୍ମୀ ବା ଶ୍ରେଷ୍ଠା କନ୍ୟା । ଇନ୍ଦ୍ର କାନ୍ଥକ-ହୃତ୍ବକ କରିବା ବ୍ୟକ୍ତି । ୨୧-୨ କଳିଲିଙ୍ଗି—କଳ୍ପନା କରିବା । ଯାହ୍ର-ଯାହା । ତାହ୍ର-ତାହା ।ଠୁଳ-ଗୋଲ୍ଲକାର । ଲମ୍ବକ-ଲମ୍ବିବା ଓ ବଢ଼ ଦେଖାଯିବା । ୨୧-୩ କମଳା—ଲକ୍ଷ୍ମୀ ଓ ଲେମ୍ବୁ । ଶ୍ରୀଫଳ-ବେଲ । ଲଙ୍କଳୀ-କଡ଼ଅ ଓ ସାଁତା । ରୁଚକ-ଟଭ ଲେମ୍ବୁ । ୨୧-୪ କଟୋରୀ—କଟରି;ଅର୍ଥାତ୍ ବଡ଼ଗିନା ବା ବଡ଼ତାଟିଆ । ଟୋପର-ଉପର ଅଂଶ ବା ଉପରର ଅଙ୍ଗ । ତାଳ-ତାଳଫଳ । କଞ୍ଜକଳୀ—ପଦ୍ମକଢ଼ । ୨୨-୧ କଳେବର-ଦେହ । ଅଞ୍ଜନ-କଳା । ବହକ-ଧାରଣ କରିବା ବ୍ୟକ୍ତି । ୨୨-୨ ପିପିଲିକା-ପିମ୍ପୁଡ଼ି । ଶ୍ରେଣୀ—ସମୂହ । ସାର-କନ୍ଦର୍ପ । ଭେଲା-ନଉକା । ଭୁଳକ-ଭୁଲ୍ୟ । ୨୨-୩ କରାଳ—ବୃହତ ବା ଭୟଙ୍କର । ମନ୍ଦାକ୍ଷ—ଲଜ୍ଜା । ହତକ—ବିନାଶ କରିବା । ୨୨-୪ ପ୍ରବର୍ତ୍ତିକ—ପ୍ରବେଶ କରାଇବା ଓ ସ୍ନେହଯୁକ୍ତ । ୨୩-୧ କରୁ—କରିବାରୁ । ସକ୍ୟପକ୍ଷ—ଶୁକ୍ଳପକ୍ଷ, ପ୍ରିୟ ପକ୍ଷ ବା ପ୍ରିୟବ୍ୟକ୍ତି । ବିଧୁ—ଚନ୍ଦ୍ର । କଳାବର୍ଦ୍ଧକ—ଅଂଶ ବୃଦ୍ଧି ହେବା । ୨୩-୨ କର—ହାତ । ଝୀନ—ସରୁ । ୨୩-୩ ରୋମାଳ—ଲୋମ ସବୁ । ବିଭାଜକ—ଭାଗ ଭାଗ । ୨୩-୪ କମାଣ—ଧନୁ । ଭୂରୁ—ଭ୍ରୂଲତା । ଯୁଗ୍ମ—ଦୁଇ । ତମ୍ବୁ—ରାଉଟି । ଦଣ୍ଡୁ—ଦଉଡ଼ । ସଯୋଜ—ସଂଯୋଗକ । ୨୪-୧ ତାଳକ—ତାଳଲ୍ଲବାଦ୍ୟ । ୨୪-୨ କଳହଂସ—ପାତିହଂସ । ବାଳା—ଅଳ୍ପ ବୟସ୍କା ଉତ୍ତମା ସ୍ତ୍ରୀ । ପ୍ରସୃରକ—ପ୍ରକାଶ । ୨୪-୩ କରୁଣା—ଦୟା । ନବଦ୍ଦନକ—ଶ୍ରୀକୃଷ୍ଣ । କବନ୍ଧ—କବିତା । ଅବେଶେ—ପ୍ରେମରେ ବା ନିଶାରେ ।

## ଷଷ୍ଠ ଛାନ୍ଦ

୧-୧ କମଳାସ୍ୟ—ସୁନ୍ଦର ପଣିଅ ଅର୍ଥାତ୍ ସୁନ୍ଦରୀ । ପୁରନ୍ଦରୀ—ଶ୍ରେଷ୍ଠା । ସଙ୍ଗିଣୀ ପୁଲକ—ସଖୀସବୁଙ୍କୁ । ୨-୧ କଳଧଉତ—ସୁବର୍ଣ୍ଣ । ମଞ୍ଜରୀ—କୋମଳ ଲତା । କଳ—ଯନ୍ତ୍ର । କ୍ଵ—କ୍ୱଅବା । ଧାତା—ବିଧାତା । ଗୃଳକ—ଚଳାଇଲ୍ଲ ବାଲ୍ଲ । ୨-୧ କନକା—କଢ଼ । ପ୍ରଫୁଲ୍ଲ—ଶୋଭାଯୁକ୍ତ, ସୌନ୍ଦର୍ଯ୍ୟତା, ହରଷିତ ଓ ବିଶେଷ । ମଞ୍ଜୁଳ—ସୁନ୍ଦର । ହରକ—ହଳଦିଆ ବର୍ଣ୍ଣ, ଶ୍ରୀକୃଷ୍ଣ । ୨-୨ ପ୍ରବାଳ—ପୋହଳା । ଚଳନ୍ତ—ଚଳବା । ୩-୧ କଳାପୀ—ମୟୂର । ଶିଖେ—ଉପରେ । ମାରଗ—ମରକତ ନାମକ ଏକପ୍ରକାର ମଣି । କାମୁକ—ଜହ୍ଲାଉ ବା ମୀନା । ୩-୨ ପିକ—କୋଇଲ । ୪-୧ ପଦ୍ମିନୀ—ଶ୍ରେଷ୍ଠା ସ୍ତ୍ରୀ ଓ ପଦ୍ମଲତା । ପଦବୀ—ଉପାଧି । ରମା—ସ୍ତ୍ରୀ । ୪-୨ କବଟେଶ—ବେଶଭୂଷା ହୋଇ । ସ୍ୱରୂପକ—ପ୍ରତ୍ୟକ୍ଷ କଥା । ୫-୧ କରୀଗତ—ହସ୍ତୀଗମନା । ୫-୨ ଶିରେ—ମସ୍ତକରେ । ହଂସ—ସୂର୍ଯ୍ୟ । ହଂସକ—ନୂପୁର ପାଦାଳଙ୍କାର । ୬-୧ କଉମୋଦକୀଧର—ଶ୍ରୀକୃଷ୍ଣ । ବିଲୋକ—ଦେଖିବା । ୬-୨ କନ୍ଦରୀ—ଗୋଲକାର ଦ୍ରବ୍ୟ, ପେଣ୍ଡୁ କମ୍ୱା ଲଗାଲଗି ହୋଇଥିବା ଦୁଇଗୋଟି ଫଳ । ତୃଣାଙ୍କୁର—ଘାସଗଜା । ଶବକ—ଅଶ୍ଚର୍ଯ୍ୟ । ୭-୧ କଣ୍ଟକହୀନ—କଣ୍ଟା ନଥିବା । ଭୃଙ୍ଗେ—ଭ୍ରମର-ମାନଙ୍କରେ । ଯୁତକ—ମିଳନ ବା ସୁଯୁକ୍ତ । ୭—୨ ଦୃଷ୍ଟିପାତକ—ଦେଖୁ । ୮-୧ କନ୍ନାନ୍ତ—ଜନମକାଳରୁ । ପାଶକ—ପ୍ରିୟ, ସଙ୍ଗ, ଏକନ୍ତ ବା ନିକଟରେ । ୮-୨ କଳେବର—ଦେହ । ସିନ୍ଧୁ ସମୁଦ୍ର । ଝାସକ—ଝାସଦେବା । ୯-୧ କଲ୍ପୁଛି—କାମନା କରୁଛି । ଅମ୍ବକ—ନେହ । ୯-୨ କନଡ଼ା—ରାଗ ବିଶେଷ । ବେଣୁବାଦକ—ବଂଶୀ ବଜାଇବା ବ୍ୟକ୍ତି । ୧୦-୧ ପରଶେ—ଶୁଭିବାରୁ, କର୍ଣ୍ଣରେ ବାଜିବାରୁ । ପୁଲକ—ତୋଷ, ଅନନ୍ଦ, ହରଷ ଓ ଦେହରେ ରୋମ ଠାଙ୍କୁରିବା । ୧୦-୨ ସିଂହାବଲୋକନ—ଶ୍ରେଷ୍ଠ ଭାବରେ ଦର୍ଶନ ବା କଟାକ୍ଷ ଦୃଷ୍ଟିପାତ । ଛଳକ—ଶ୍ରେଣୀ । ୧୧-୧ କଲ୍ପଇ—ଭାବଇ । ମନାଇ—ଗଳ୍ପ କରଇ ।

୧୧-୨ ଶ୍ୟାମ ଘନ—ମେଘ ରୂପକ ଶ୍ରୀକୃଷ୍ଣ । ରସ—ଜଳ ଓ ଆନନ୍ଦ ରସ ବା ସୁଖ । ଚାତକ—ଜନ୍ମାଇଲ୍ଲ ବାଲ୍ୟ । ୧୨-୧ କଦନ—ବିନାଶ କ୍ଷମ୍ୟା ପାପ । ସଦନ—ଗୃହ । ଚତୁଷ୍ପାଦେ—ଚାରିପାଦରେ ବା ପୂର୍ଣ୍ଣ-ଭାବରେ । ସମ୍ପାଦକ—ସାଇତା ହୋଇଥିବା । ୧୨-୨ କଳାନିଧି—ଚନ୍ଦ୍ର । ଅତିଘନେ—ପ୍ରବଳ ଭାବରେ ବା ଅତି ମେଘରେ । ପାଦକ—ଚରଣ । ୧୩-୧ କଦର୍ଥେ—ପୀଡ଼ାରେ ବା ଆଶାଶୂନ୍ୟରେ । ଅତି-ମନ୍ଥରେ—ଅତି ଧୀର ଗତିରେ । ସ୍ୱପୁରେ—ନିଜ ଗୃହରେ । ପଶିବ—ପ୍ରବେଶ କରିବା । ୧୪-୧ ସମ୍ଭାର—ଉପକରଣ ଦ୍ରବ୍ୟ ବା ଉପଚାର । ଉତ୍କଣ୍ଠା ମନର ବିଚଳିତ ଭାବ । ପୃଚ୍ଛକ—ପଚାରିବା ବ୍ୟକ୍ତି । ୧୪-୨ ଟେକେ—ଛୁଏ । କେଶେ—ମସ୍ତକର କେଶରେ । ଶିଖିଚନ୍ଦ୍ରକ—ମୟୂର ଚନ୍ଦ୍ରିକା । ୧୫-୧ ନୂଟଥ—ଦୁଇଗୋଟି । ଚରଣେ—ପାଦରେ । ବେଣୁକ—ବଂଶୀ, ବାଡ଼ି । ୧୫-୨ ହରିତ—ହଳଦିଆ ବର୍ଣ୍ଣ । ଅଂଶୁକ—ଲୁଗା । ୧୬-୧ ଭ୍ରାନ୍ତ—ସନ୍ଦେହ । ମୋତିଏ—ଗୋଟିଏ ମୁକ୍ତା । ନାସା—ନାସିକାରେ । ଯୁତକ—ଯୁକ୍ତ । ୧୬-୨ ନର୍ତ୍ତକ—ନାଚଲା ବ୍ୟକ୍ତି । ୧୭-୧ ଗୁଞ୍ଜଗୁଞ୍ଜି ମାଳା—ଅତିସୁନ୍ଦର କାଇଁଚର ମାଳ । ବକ୍ଷେ—ଛାତିରେ । ଆନ୍ଦୋଳକ—ଝୁଲିବା ବା ଲମ୍ବିବା । ୧୭-୨ ମୃଦୁ ମୃଦୁ—ଥିରିଥିରି କରି । ଘୋଷେ—ଗାଏ ବା ବଜାଏ । ବେଣୁ—ବଂଶୀ । ସୁଘୋଷକ—ଅତ୍ୟନ୍ତ ମଧୁର ଶବ୍ଦ । ୧୮-୧ ତନୁବସ୍ତ୍ର—ଦେହବସ୍ତ୍ର । ୧୮-୨ ବ୍ରଜେ—ବ୍ରଜପୁରରେ । ଜନକ—ବାପ । ୧୯-୧ କ ପ୍ରତି ମତ—କାହାଠାରେ ମତି । ଭାକେ—କହେ । ନବୀନା—ନୂତନ ନାରୀ । ଲଜ୍ଜକ—ଲଜ୍ଜା । ୧୯-୨ ଆଳୀ—ସଖୀ । ଅନଳେ—ନିଆଁରେ । ଜତୁକ—ଜଉ । ୨୦-୨ ଶ୍ରବଣ ଦତ୍ତକ—କର୍ଣ୍ଣଦେଇ ଶୁଣିବା ଓ ଆନନ୍ଦିତ ହେବା ।

---

## ସପ୍ତମ ଛାନ୍ଦ

୧-୧ କଦର୍ଥିତ—ପୀଡ଼ାଗ୍ରସ୍ତ । ପ୍ରହାରୁଁ—ପ୍ରହାର କରିବାରୁ ବା ବାଧା ଦେବାରୁ । ତୀକ୍ଷ୍ଣଶାୟକ—ଅତ୍ୟନ୍ତ ଦାଢ଼ଯୁକ୍ତ ମୁନିଆଁ ଶର ।

୧-୨ ମରମେ—ହୃଦୟକୁ । ଲକ୍ଷ—ଯୋଖ । ରଞ୍ଜନାସ୍ୟକ—କନ୍ଦର୍ପ । ୧-୩ ଲବ୍ଧକ—ଶବର । ୧-୪ କମଳ ନେତ୍ର—ଶ୍ରୀକୃଷ୍ଣ ଭାବୁକ—ଭାବନା କରିବା । ୨-୧ ଲକ୍ଷକ—ଅନେକ, ଉତ୍ତମା ସୁନ୍ଦରୀ ଓ ନୟନ ମନ ଲାଗି ରହିବା ସ୍ଥାନ । ୨-୨ କଳନେ—କଳନା କଲେ । ୨-୩ କଳିନାହିଁ—ଭାବନାହିଁ ବା ଆଶା କରିନାହିଁ । ବିଶ୍ୱସୃକ—ବିଧାତା । ୩-୧ କଥନେ—କହିବାରେ । ବାକ—ବଚନ । ୩—୩ କଦା—କେବେ । କାରୁଣିକ—ଦୟାଯୁକ୍ତ । ୩-୪ ମାଣିକ—ମାଣିକ୍ୟ । ୪-୨ କରିଣିକେ—ନଖଦ୍ୱାରା, ଭୂମି ଉପରେ ଓ ଦଣ୍ଡକରେ । ପ୍ରଭୁସନ୍ତକ—ପ୍ରଭୁପଣର ଚିହ୍ନ ବା ନିଦର୍ଶନ । ୪-୩ କରେ ଭରୁଁ—ହାତରେ ପିନ୍ଧନ୍ତି ଷଣି । ୪-୪ ସୁଖ ଜାତକ—ସୁଖ ଜନ୍ମାଇବା ବ୍ୟକ୍ତି । ୫-୧ ଦର୍ପ—ଗର୍ବ । କୃତୁକ—ଉପକୃତ ବା ତୋଷଯୁକ୍ତ । ୫-୨ କରସ୍ଥିତ କରିବା—ହାତ ରଖିବ ବା ହସ୍ତରେ ଧରିବ । ଇରିବାତୃକ—ଚନ୍ଦ୍ର । ୫-୩ ମଧୁପ୍ରିବକ—ମଧୁପାନକାରୀ । ୫-୪ ବ୍ୟକତେ—ବଚନରେ ବା ସ୍ୱନରେ । ପିକ—କୋଇଲି । ୬-୧ କମଳ—ପଦ୍ମ । ଗିରିମସ୍ତକ—ପର୍ବତ ପରେ । ୬-୨ କରିଜ—ନଖ । ପାତକ—ପକାଇଲା ବାଣ । ୬-୩ କଲ୍ମମାନ—ଅଭିମାନ କମ୍ପା କଳିଥିବା ମାନ ବା ତୋଷ ଓ ଆନନ୍ଦ । ଲବଲବକ—କ୍ଷଣକ୍ଷଣ । ୬-୪ କମଳ ନାଳେ—ପଦ୍ମନାଡ଼ରେ । ହସ୍ତୀବନ୍ଧକ—ହସ୍ତୀତୁଲ୍ୟ ବନ୍ଧନ । ୭-୨ ପାବକ—ଅଗ୍ନି । ୭-୩ କର୍କଶ—କଠିନ । ଭୂଷଣ—ବଜ୍ର । ଫୁଲ ଶାୟକ—ଫୁଲଶର ବା କନ୍ଦର୍ପର ଶର । ୭-୪ ଭେଦକ—ଭେଦକାରୀ । ୮-୨ କନକ ପୁଷ୍ପ—ସୁନା ଫୁଲ । ଗନ୍ଧକ—ସୁବାସିତ । ୮-୩ କରଜେ—ନଖରେ ଓ ହାତ ମୁଠାରେ । କୁମ୍ଭଜର—ଅଗସ୍ତି ଋଷିଙ୍କର । ସିନ୍ଧୁ ଉଦକ ସମୁଦ୍ର ଜଳ । ୯-୧ ତୁଲ୍ୟ—ସମାନ । ତ୍ରିଲୋକ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ୯-୨ କମଳ—ପଦ୍ମ । ସଙ୍ଗକ—ସଙ୍ଗୀ । ୯-୩ କଳାନିଧି—ଅଶେଷ ଗୁଣ ସମ୍ପନ୍ନ ବ୍ୟକ୍ତି, ଲୀଳା ସାଗର ଓ ବଡ଼ ପଣ୍ଡିତ । ଏଣିକ—ଏବକୁ । ଧାରକ—ଧାରଣ କରିବା ବ୍ୟକ୍ତି ଓ ଧାରଣକାରୀ । ୯-୪ କଳାନିଧି—ଚନ୍ଦ୍ର । ଏଣୀକ—ଶଶାଙ୍କ । ଅଙ୍କ—ବେଦନ ବା କୋଳ । ୧୦-୧ ଭୁଜଙ୍ଗ—ସର୍ପ । ବେଷ୍ଟକ—ଗୁଡ଼ାଇ

ରଖିବା ଓ ଲଗୁଅଲ । ୧୦-୨ ଚନ୍ଦନାଙ୍ଗୀ—ସୁନାସିତ ଦେହା, ଶୀତଳାଙ୍ଗୀ ଓ କୋମଳାଙ୍ଗୀ । ଭୁଜଙ୍ଗ ଠେକ—ସର୍ପଶ୍ରେଷ୍ଠ । ୧୦-୩ କମ୍ପନ—ଥରିବା । ଊରୁ—ଜଙ୍ଘ । ବାରକ—ଲଣାପଡ଼ିବା । ୧୦-୪ ଊରୁବଶୀ—ଉର୍ବଶୀ ବା ସ୍ୱର୍ଗର ଅତିସୁନ୍ଦରୀ ବେଶ୍ୟା । ୧୧-୧ ବଧ—କଥା । ତନମନ—ଦେହ ଓ ମନ କିମ୍ବା ମନ ଓ ପ୍ରାଣ । ୧୧-୨ ରଚି—ରଚନା କରି । ଯଥା—ଯେପରି । ୧୧-୩ କତିରେ—ପାଖରେ । ମଧୁମଙ୍ଗଳ—ଶ୍ରୀକୃଷ୍ଣଙ୍କର ଏକ ସଖା । ୧୧-୪କଲାଶ୍ରବଣ—ଶୁଣିଲ । ୧୨-୧ ବର ରସିକ—ରସିକ ଶ୍ରେଷ୍ଠ । ୧୨-୨ ବଣକ—ବଣକାସ । ୧୨-୩ ଅବଲୋକ—ଦେଖିବା । ୧୨-୪ କମ୍ପମାନ୍—କମ୍ପମାନ ହେବା ବା କମ୍ପିବା । ସ୍ଫଟିକ—କାଚ । ହୀରକ—ହୀରା । ୧୩-୧ ନବୀନା—ନୂତନା ରମଣୀ । ରତ୍ନପଦକ—ରତ୍ନନିର୍ମିତ ହାରମଧ୍ୟରେ ଥିବା ପଦକ ବା ପଦ୍ମବିଶିଷ୍ଟ । ୧୩-୨ ଉତ୍ସାହା—ସ୍ପୃହା । ଯତ୍ନପଦକ—ଯତ୍ନବାନ ହେବା, କିମ୍ବା ମନ ଅଥବା ପାଦର ସୁନ୍ଦର ପଣ । ୧୩-୩ କର୍ମଣେ—ଛୁଅଁର କରିବାରେ । ଦଶୁନାହିଁ—କେହିଥିବା ପରି ଦେଖାଯାଉନାହିଁ । ବଣିକ—ବଣିଅ ୧୩-୪ କରଣେ—କରିବାରେ । ଉତ୍ସୁକ—ଇଚ୍ଛା ବା ଲୋଭ କରିବା ବ୍ୟକ୍ତି । ୧୪-୧ କଣ୍ଠୀମଣ୍ଡଳେ—ସ୍ୱାମୀଙ୍କ ମଧ୍ୟରେ । ସମ୍ପାଦକ—ସାଇତିଲା ବାଲ । ୧୪-୨ କଟକ—ହସ୍ତ ଓ ପାଦର ଅଳଙ୍କାର ଏବଂ ନଗର । କୃତ—ନିର୍ମିତ ବା ସ୍ଥିତ । ରଟକ—ପ୍ରକାଶିତ ୧୪-୩ ଆଭରଣ—ଖଉଣୀ ବା ମିନା । ଅଳକ—ଚୂର୍ଣ୍ଣକେଶ ବା ମସ୍ତକ ଅଗ୍ରଭାଗର ଛୋଟ ଛୋଟ କେଶ କିମ୍ବା ଅଳକା ନାମକ ଏକପ୍ରକାର ନୃତ୍ୟର ଅଳଙ୍କାର । ୧୪-୪ ଅମ୍ବକ—ଚକ୍ଷୁ । ୧୫-୧ କର—ହସ୍ତ । ୧୫-୨ କାଳକାଳକ— ସବୁଦିନେ ଓ କାଳର ବିନାଶ କାରୀ । ୧୫-୩ କଥିତ—କହିବା ଓ ପ୍ରଶସ୍ତ । ଅଙ୍ଗଦେଶ—ସର୍ବାଙ୍ଗ, ରାଜଦର୍ପକ—ନିର୍ମଳକାଚ ବା ଅତିଉତ୍ତମ ଆରସୀ କାଚ ଓ କନ୍ଦର୍ପ ରାଜା, ୧୫-୪ କଟାକ୍ଷେ—ନେତ୍ରଭଙ୍ଗୀଦ୍ୱାରା ବା ନେତ୍ରରେ ଠାରି ସଙ୍କେତ ଦେବା । ରଚକ—ରଚିବା ବାଲ । ୧୬-୧ କାଳକରରେ—ସମୟର ହାତରେ, ସମୟଦ୍ୱାରା ବା କାଳ ହାତରେ । ରଜକ—ଶୋଭିତ । ୧୬-୨ କଳପ

—ଜନ୍ମାଇବା ଓ ଯେଷିବା । ହାସେକ—ହସିବାଦ୍ୱାରା ୧୬-୩ ବାଣୀ—ବଚନ । ପରପୁଷ୍ଟକ—ତୋଷବନ୍ତ ଓ ଅନନ୍ଦତ । ୧୭-୧ ପିକ——କୋଇଲ । କଣ୍ଠେ—ନଶ୍ୱେଷ୍ଟ ବା ସ୍ପରହୀନ କମ୍ବା ମୁଖ ନ ଫିଟିବା ଅବସ୍ଥା । ସ୍ତୋକ—ଚୃତକ ପକ୍ଷୀ । ମଧୁଅଣ୍ଡକ—ଭ୍ରମର ବା ମଧୁପାନକାରୀ । ୧୭-୩ କନ୍ଦର୍ପୀଣ—ଶମ୍ବରସୁର । ମନ୍ଦରେ—ଗୃହରେ । ରତିତୁଲ୍ୟକ—କନ୍ଦର୍ପର ସ୍ତ୍ରୀ ରତିଦେବୀ । ୧୭-୪ କଇତବେ—କପଟରେ ବା ଗୁପ୍ତରେ । ନର୍ତ୍ତକ—ନାଚିବା ବ୍ୟକ୍ତି । ୧୮-୧ ଅନ୍ତକ—ପାପ ବନାଶକ ଶ୍ରୀ ଶ୍ରୀକୃଷ୍ଣ । ୧୮-୨ କଥଯୁକ୍ତ—କହିଲ । ଧାପ୍ତକ—ପ୍ରଶସ୍ତ । ୧୮-୩ ରୂପକ—ସୌନ୍ଦର୍ଯ୍ୟତା । ୧୮-୪ କପୋଳ—ମସ୍ତକ । ଅଳକ—ମିଥ୍ୟା । ୧୯—୧ କଲ୍ପ—ହେବତୁଳର । ଶବୁକ—ଓଠ । ୧୯-୨ କଳାକ—ଏକଅଂଶ । ଭୃରୁ—ଭୂରୁ—ଭ୍ରୂଲତା । ବକ୍ରେ—ବାଙ୍କ ଭାବରେ । ତୁଳକ—ସମାନ । ୧୯-୩ କଞ୍ଜ—ନର୍ମଳ । ନଳନ—ପଦ୍ମ । ୧୯-୪ କଳାବତୀ—ଉତ୍ତମ ଚେତନାବନ୍ତ ଦେହା ବା ରସବତୀ । ନତମ୍ବ—ପିଚ୍ଛ । ଚନ୍ଦ୍ରବିମ୍ବକ—ଚନ୍ଦ୍ରମା ପ୍ରାୟ ଉଜ୍ଜ୍ୱଳ ଓ ପ୍ରଶସ୍ତ । ୨୦-୧ କରରୁହ—ନଖ । କଳାକଳାକ—ଅଂଶ ଅଂଶ ବା ଭାଗ ଭାଗ । ୨୦-୨ ମନ୍ଦା ଆହ୍ଲାଦକ—ଅତ୍ୟନ୍ତ ସୁନ୍ଦର ଦେହା ବା ସୁଖଦାୟିନୀ । ୨୦-୩ କଟକ—ହସ୍ତପାଦାଦର ଅଳଙ୍କାର । ଚନ୍ଦ୍ରେ—ଚନ୍ଦ୍ରମାତୁଲ୍ୟ ନର୍ମଳ ଦେହାଠାରେ କମ୍ବା ସୁବର୍ଣ୍ଣାଦ ରେଣୁଦ୍ୱାରା । ଭୂଷକ ଭୂଷଣ ବା ଅଳଙ୍କାର ଦ୍ୱାରା ଶୋଭାଯୁକ୍ତ । ୨୧-୧ ଚନ୍ଦ୍ରପୁରେ—ଚନ୍ଦ୍ରଶାଳା ପୁରରେ । ୨୧-୨ କକ୍ଷ—କାଖ । ବକ୍ଷ—ଛାତି । ଚନ୍ଦ୍ର ଲେଖକ—ଅର୍ଦ୍ଧଚନ୍ଦ୍ରଯୁକ୍ତ ଶବ୍ଦର ସ୍ଥାନ ଏବଂ କର୍ପୂର, କସ୍ତୁରୀ ଓ ଚନ୍ଦନର ଶବ ଲେଖିବା । ୨୧-୩ ଚନ୍ଦ୍ରହାସ—ଚନ୍ଦ୍ରତୁଲ୍ୟ ହାସ୍ୟ । ଛବ ତିଳକ—ସୁନ୍ଦରୀ ଶ୍ରେଷ୍ଠା । ୨୧-୪ କରେ—ହାତରେ । ବ୍ୟଜନ—ବଚଣା । କେକୀ ଚନ୍ଦ୍ରକ—ମୟୂର ପୁଚ୍ଛ ନର୍ମିତ । ୨୨—୧ ଚନ୍ଦ୍ର—କର୍ପୂର । ବାକ୍ୟ—କଥା କହିବା । ୨୨-୨ ଜ କ—ଅହା ବା ପ୍ରାଣ କ । ଗତ—ଜ୍ୱର ବା ମୃତ୍ୟୁ ଅବସ୍ଥା । ୨୨-୩ କଳକଣ୍ଠୀ—କୋକଳ ବଚନା । ଚନ୍ଦ୍ରସ୍ନେହକ—ଚନ୍ଦ୍ରଠାରେ ବା ଚନ୍ଦ୍ରକିରଣରେ ସ୍ନେହଯୁକ୍ତା

୨୨-୪ ଙ୍କରଜ—ଋଣ, ଅଙ୍କୁଳ, ନଷ୍ଟ ଓ କରିବା ବ୍ୟକ୍ତ । ୨୭-୧ କରୁଣା—ଦୟା । ସାମୟିକ—ସମୟରେ । ୨୭-୨ କଲ୍ୟାଣ—ଶୁଭ । ହସ୍ତକ—ହସ୍ତର ନିଦର୍ଶନ । ୨୭-୪ କଥନେ—କହିବାରେ ବା ରଚନା କରିବା ଦ୍ୱାରା କମ୍ବା କହିବା ନିମନ୍ତେ ତୋଷକ—ଆନନ୍ଦିତ ।

---

## ଅଷ୍ଟମ ଛାନ୍ଦ

୧-୧ ବିଧୁ—ଚନ୍ଦ୍ର ଓ ଶ୍ରୀକୃଷ୍ଣ । ୧-୨ କଳହଂସ—ରାଜହଂସ । ଆଳୀ—ଯୁବତୀ । ଅଳିରେ—ସଖୀଙ୍କ ସଙ୍ଗରେ । ମେଳକ—ଏକତ୍ରିତ ୨-୧ କବରୀ—ମସ୍ତକର କେଶ । କୁସୁମ—ଫୁଲ । ସୁମନ—ଉତ୍ତମମନ କିମ୍ବା ଉତ୍ତମ ବୁଦ୍ଧି ଯୁକ୍ତ ପୁରୁଷ, ଅଭିଳାଷ କରିବା ଓ ଇଚ୍ଛାବତୀ ସ୍ତ୍ରୀ । ୨-୨ କଟି ମେଖଳା—ଅଣ୍ଟାସୂତା ବା କଟି ଅଳଙ୍କାର ବିଶେଷ । ରଟି—ଶବ୍ଦକରି । କୁରଙ୍ଗ—ମୃଗ । ଅଘାତକ—ଅଘାତପ୍ରାପ୍ତ । ୩-୧ କଦମ୍ବ—ସଖୀଙ୍କ ମେଳରୁ । ପଦ୍ମା—ଏକସଖୀ ଗଣବଣା—ସଙ୍ଗଛଡ଼ା । ଏଣୀ—ହରିଣୀ । ୩-୨ ଗୃଷ୍ଟୁ—ପ୍ରିୟବଚନ ବା ଗୃଲଷିଯୁକ୍ତ । ବଟୁକ—ମଧୁମଙ୍ଗଳ ନାମକ ବ୍ରାହ୍ମଣ ବାଳକ (ଶ୍ରୀକୃଷ୍ଣଙ୍କ ସଖା) । ୪-୧ ସାହାପଣରୁ—ସାହାଯ୍ୟକାରୀ । ୪-୨କଳମ୍ବେ—ବାଣଦ୍ୱାରା । କାମ—କନ୍ଦର୍ପ । ରକ୍ଷକ—ରକ୍ଷାକାରୀ । ୫-୧ କହୁଇନୋହି—କହି ନୁହେଁ । ୫-୨ କମଳା—ଅନ୍ୟ ଏକ ସଖୀ । ପ୍ରତନାକ—ସ୍ୱର୍ଗଠାରୁ ବଳି, ଅତିଶ୍ରେଷ୍ଠ ବା ଅତ୍ୟନ୍ତ ସୁଖଯୁକ୍ତ । ୬-୧ କ୍ଷୀର—ଦୁଗ୍ଧ । କାମେ—କନ୍ଦର୍ପକୁ । ୬-୨ ବେଣୁବାଦକ—ବଂଶୀ ବାଦନ କାରୀ । ୭-୧ କମଳାନନୀରେ—ପଦ୍ମମୁଖୀ ଠାରେ । ବିପରିତ ହେବାରେ—ଓଲଟାରେ, ବିପରୀତ ରତିରେ । କାମ୍ୟ—ଅଭିଳାଷୀ । ୭-୨ ସାରଣା—ପରତ୍ୟକ୍ଷ ଉପରୁର ଇଙ୍ଗିତକ—ପରଦ୍ୱାରା କହିବା । ୮-୧ ବେରତନ—ବେତନ, ଟଙ୍କା ପଇସା ଓ ପଡ଼ । ମତନ—ବନ୍ଦୋବସ୍ତ । ପରିହାସିକ—ଥଟ୍ଟା କଥା କହି ହସିବା । ୮-୨ କପର୍ଦ୍ଦିକା

—କଉଡ଼ି ବା ଠଙ୍କା ପଇସା । କପର୍ଦ୍ଦ—ଶିବ ଅର୍ଥାତ୍ ଦୂତ ଭୂଗୀ ଶିବ । ପ୍ରେମ ରତ୍ନମାଳ—ପ୍ରେମ ରୂପକ ରତ୍ନସବୁ । ୯-୧ ଏକାନ୍ତ—ନିର୍ଜ୍ଜନ ସ୍ଥାନରେ । ହରିବ୍ରଣୀ—କୋକିଳ ଭଳି ସୁନ୍ଦର ଗୃଢ଼—ପ୍ରିୟବାକ୍ୟ ବା ମଧୁରବାକ୍ୟ । ସର୍ଜ୍ଜନକ—ସର୍ଜ୍ଜନାକାଂକ୍ଷୀ ବା କହିବା ବାଳ । ୯-୨ କରୁଣା—ଦୟା । ବିପାକ—କର୍ମଫଳ ଭୋଗ । ଯାକ—ଭୋଗ ସମୟ । ୧୦-୧ କହ୍ନାଇ—ଶ୍ରୀକୃଷ୍ଣ । ନିଅଳ ବପିନେ—ନିଅର୍ଳା ଫୁଲ ବଗିଚାରେ ସଂସ୍ଥାପକ—ପ୍ରବେଶ । ୧୦-୨ ଅନଳ—ମୁଣ୍ଡ । କାନନ—ବନ । ଗମନ—ଗମନ କରି ଅସିବା । ୧୧-୧ ନବବାଳକା ତିଳକ—ନୂତନ ବାଳକାଙ୍କ ପରେ ଶ୍ରେଷ୍ଠା ଅର୍ଥାତ୍ ଚନ୍ଦ୍ରାବଳୀ । ୧୧-୨ ନବ ବାଳକ । —କଣ୍ଠମାଳା । ୧୨—୧ କରାଞ୍ଜଳ—ହାତଯୋଡ଼ି । ଗୃଢ଼—ପ୍ରିୟବାକ୍ୟ ମାଧବ—ଶ୍ରୀକୃଷ୍ଣ । ଯଥା—ଯେପରି । ଯାଚକ—ମାଗନ୍ତା ଲୋକ । ୧୨-୨ ଭୁଣ୍ଡ—ଏକଣ । ହେମ ପ୍ରତିମା—ସୁବର୍ଣ୍ଣରେ ନିର୍ମିତ ରୂପ । ସ୍ୱର୍ଣ୍ଣ ପାରକ—ବଣିଆଁ । ୧୩-୧ କଥମସ୍ୟ—କହିବା । ଅବଲୋକ—ଦେଖିବା । ୧୩-୨ କଣକ—କ୍ଷଣକାଳ । ଦେବରୂପ—କାଷ୍ଠ କମ୍ବା ପାଷାଣ ପ୍ରାୟ । ଦୂର ପଲକ—ଚକ୍ଷୁର ପିଛଡ଼ା ନ ପଡ଼ିବା ଅବସ୍ଥା । ୧୪-୧ ପିୟୂଷ—ଅମୃତ । ଧାରକ—ଧାରଣ କରିବା ବ୍ୟକ୍ତି । ୧୪-୨ ତରତୋଷୀ—ସର୍ବଦା ତୃଷାରେ ଅତୁର ହେବା ବ୍ୟକ୍ତି । ଶିରୀଷ ଅଙ୍ଗିନୀ—ଶିରୀଷ ଫୁଲତୁଲ୍ୟ ଉତ୍ତମ ବର୍ଣ୍ଣଯୁକ୍ତା ଓ କୋମଳଦେହା । ମନ୍ଦାମାରୁତ—ସନ୍ତୋଷ କାରକ, ଉତ୍ତମ ଜଳ ଅଥବା ଶାନ୍ତି ରୂପକ ଜଳ । ୧୫-୧ ଅମ୍ବକ—ଚକ୍ଷୁ । ୧୫-୨ କମନୀୟସ୍ୟ—ସୁନ୍ଦର ପଣରେ । ୧୬-୧ କଦଛ—କହିତ ଭାବରେ । କେତେବେଳେ ବା ମନରେ । ଶକୁର—ମସ୍ତକର କେଶ । ନିରେଖି—ଦେଖି । ୧୬-୨ କରୁଣାକର—କୃପାକର । ସଲିଳ—ଜଳ । ସେଚକ—ସିଞ୍ଚନବାଳ । ୧୭-୧ କଲପେ—ବହୁତ କାଳ । ଜୀବତା—ଜୀବନ ଦେଇଥିବା । ଅନ୍ତକ ଯମ । ୧୭-୨ କଳ—କୌଶଳ । ଉତେ—ବଡ଼ ପାଟରେ । ୧୮-୧ କମଳ ଭବ—ବ୍ରହ୍ମା । ବିରହ—ବିଯୋଗ, ଦୁଃଖ । ସଞ୍ଜିବେ—ଜୀବନଥିବା ବ୍ୟକ୍ତିମାନଙ୍କୁ । ଦାହକ—ପୋଡି ଜାଳି ପକାଇଲା ବାଳ ।

୧୮-୨ କଦର୍ଥିତ ଶତେ—ଦୁଃଖ ମନରେ । କାମନା ସିଦ୍ଧିରୁ—କାମନା ପୂର୍ଣ୍ଣ ହେବାକୁ । କୁଶଳ—ମଙ୍ଗଳୀ ବା ଶୁଭକାମନା । ଜନକ—ପିତା କମ୍ବା ବିଧାତା । ୧୯-୧ ମାନସେ—କାମନା ମନରେ । ଦେହାନ୍ତରେ—ପରଜନ୍ମରେ । ତପକାମ—ତପସ୍ୟା କରିବାର ପରିଶ୍ରମ । ସଫଳକ—ସାର୍ଥକ ବା ପୂରଣ । ୧୯-୨ କପିଳ—କପିଳ ମୁନି । କୋପାଗ୍ନି—କ୍ରୋଧ ରୂପକ ନିଆଁ । ଦଗ୍ଧକନେ—ପୋଡି ଦଗ୍ଧ ହେଉଥିବା ଜନେ ଅର୍ଥାତ୍ ସଗରବଂଶ । ଜାହ୍ନବୀ—ଗଙ୍ଗା । ଶାନ୍ତକ—ଶାନ୍ତିଦାୟକ ୨୦-୧ କରଜ—ନଖ । ମଞ୍ଜିଷ୍ଠାରାଗ—ମଞ୍ଜୁଆତି ରଙ୍ଗ । ୨୦-୨ କଉଷେୟ ବାସ—ରେଶମ ନିର୍ମିତ ଏକବସ୍ତ୍ର । ସିନ୍ଦୁରାଭ—ସିନ୍ଦୁରର ବର୍ଣ୍ଣର । ଅଂଶୁକ—ଲୁଗା । ୨୧-୧ ଅଳକା—ମସ୍ତକର ଅଳଙ୍କାର । ପ୍ରବାଳ—ପୋହଳା । ମାଣିକ—ମାଣିକ୍ୟ । ୨୧-୨ କପୋଳେ—ମୁଣ୍ଡ ଉପରେ । ଉରଜେ—ସ୍ତନରେ । ଚନ୍ଦ୍ରକ—ଚନ୍ଦା । ଗଇରିକ—ଗେରୁ । ୨୨-୧ ଅନ—ଅନ୍ୟ । ୨୨-୨ କଞ୍ଜଜାତ—ପଦ୍ମଠାରୁ ସରସ । ରଞ୍ଜନ କରିବ—ପିନ୍ଧାଇ ଦେବ ବା ଲଗାଇ ଦେବ । ଯାବକ—ଅଳତା ୨୩-୧ କଳେବର—ଦେହ । —ବାର୍ଣ୍ଣିକ—ଗେରୁ ବା ହଇମାଟି । ୨୩-୨ କର୍ଣ୍ଣାବତଂଶ—କର୍ଣ୍ଣର ଅଳଙ୍କାର । କୋକନଦ—ରକ୍ତପଦ୍ମ । କୋରକ—କଢ଼ । ୨୪-୧ କବଳକୁ—ଖାଇବାକୁ । ତାମ୍ବୁଳ—ପାନ । କାଳକ—ସବୁଦିନେ । ୨୪-୨ ପାଟଳ—ଶ୍ୱେତ ଓ ରକ୍ତବର୍ଣ୍ଣ କମ୍ବା ଚୋବୁଥିବା ପାନ ରସ ଅଥବା କଣ୍ଠର ଏକପ୍ରକାର ଅବସ୍ଥା । ବୋଳ—ପାନପିକ । ପ୍ରତିବମ୍ବକ - ଅରମ୍ଭରେ ଦଶିଲ ପ୍ରାୟ ଦଶିବା । ୨୫-୧ କଚ—କେଶ । ଶାମଳ—ସାଉଳ । ଚୂଳା—ଚୂଳ । ଲେଟ୍ରାଇ—ଖୋଜାଇ । କୁରୁବକ—ଦାସକେରଣ୍ଟା ଫୁଲ । ୨୫-୨କରବୀର—କରବୀ ଫୁଲର । ଗର୍ଭ—ଜୂଡ଼ା । ଝଂସ୍ତବକ—ଫୁଲର ତୋଡ଼ା ସବୁ । ୨୬-୧ ଅନଙ୍ଗ—କନ୍ଦର୍ପ । ସ୍ତୋକ—ଗୁଚ୍ଛକ । ୨୬-୨ କମଳେ—ଜଳରେ । କମଳ—ଜଳ । ଅଭିକ—କାମୁକ । ୨୭-୧ କଳିତ କରେ—କଳଣା କରେ ବା ମନରେ ଭାବେ । ହରିତ ବାସ—ହାଲଦିଆଲୁଗା ହର—ଶିବ । ଚନ୍ଦ୍ରକ—ଚନ୍ଦା । ୨୭-୨ କଳାପୀ କଳାପ—ମୟୂର

ଚନ୍ଦ୍ରିକା । ଦଳ—ପାଖୁଡ଼ା । ଦଳକ—ସୁଯୋଗ । ୨୮-୧ କଣ୍ଟକ—କଣ୍ଟା । ରୁଞ୍ଜ—ମନୋହର । ଗୁଞ୍ଜ—କାଇଁଚ । ପୁଞ୍ଜ - ସମୂହ । ୨୮-୨ ଲମ୍ପଟ—କାମୁକ, କ୍ରୀଡାକାରୀ ଓ ଉପପତି । ୨୯-୧ସଗ—ସ୍ୱର୍ଗ । ଟେକ—ଉଚ୍ଚ । ୨୯-୨ ଶ୍ରୀ—ଶୋଭା ବା ସୌନ୍ଦର୍ଯ୍ୟତା । ଉଲ୍ଲାସକ—ଶୋଭା ପ୍ରକାଶ । ୩୦-୧ କଲ୍ୟାଣ କର—ଶୁଭଯୁକ୍ତ । ଉଦିତ—ପ୍ରକାଶିତ । ମାଳବ—ରାଗ ଓ ଦେଶ ବିଶେଷ । ଦାନକ—ଦାନଦେବା ବ୍ୟକ୍ତି । ୩୦-୨ ଅନ୍ତରକ—ଆତ୍ମୀୟ । ମାଳକ—ସମୂହ । ୩୧-୧ କରୁଣା ତରୁ—ଦୟା ରୂପକ ବୃକ୍ଷ । ଅବଲମ୍ବନ—ଆଶ୍ରୟ । ଭୃଙ୍ଗକ—ଭ୍ରମର ସବୁର ବା ଫୁଲମାନଙ୍କୁ । ୩୧-୨ ରତ୍ରୀ—ଶୃଙ୍ଗାରଯୁକ୍ତା ସ୍ତ୍ରୀ । ଶୃଙ୍ଗାରିକ—ଶୃଙ୍ଗାର କଥାକୁ । ସସାର ସାର ରସିକ—ଶ୍ରୀକୃଷ୍ଣ । ୩୨-୧ କଞ୍ଜେ—ପଦ୍ମ ଫୁଲରେ । ଅଳି—ଭ୍ରମର । ମାଳତୀ ପ୍ରତି—ମାଳତୀ ଫୁଲଠାରେ । ୩୨—୨ ଅର୍ଦ୍ଧ ଅଙ୍ଗ—ଅର୍ଦ୍ଧ ଦେହ । ୩୩-୧ କମଳା—ଲକ୍ଷ୍ମୀ । ରୋହିଣୀ—ଚନ୍ଦ୍ର ପତ୍ନୀ । ନାୟକ—ସ୍ୱାମୀ । ୩୩-୨ ଧାତ—ଶବ୍ଦ ଅର୍ଥାତ୍ ମନ୍ଦ । ହତ—ବିନାଶ । ସାତ—ସୁକର୍ମ । ସ୍ୱାଧୀନ ଭର୍ତ୍ତା—ସ୍ୱାଧୀନଭର୍ତ୍ତୃକା ଅର୍ଥାତ୍ ଯେଉଁ ସ୍ତ୍ରୀ ତାହାର ସ୍ୱାମୀକୁ ନିଜର ଆୟତ୍ତରେ ରଖିଥାଏ । ୩୪-୧ କରନ୍ତେ ଶ୍ରବଣ—ଶୁଣିଲାରୁ । ବାଣୀ—ବଚନ । ଦ୍ରବଣ—ଦ୍ରବୀଭୂତ ହୋଇ ବା ତରଳିତ ମତି ହୋଇ ଅଥବା ସୁବର୍ଣ୍ଣ ତୁଲ୍ୟ ଦେହ । ପୁଲକ—ଲୋମ ଠାକୁରିବା ଅବସ୍ଥା । ୩୪-୨ ବାମା—ସ୍ତ୍ରୀ । ନିବାରକ—ନିବାରଣ କାରୀ । ୩୫-୧ କଳାପ—ଚନ୍ଦ୍ର ଓ ମୟୂର । ଶୃଙ୍ଗ—ଚଳାଇ । ତୁଟିକ—ଅଳ୍ପ କମ୍ପା ଯିବ । ୩୬-୧ କମ୍ବୁପାଣି—ଶ୍ରୀକୃଷ୍ଣ । କୌଷେୟକ—ରେଶମ ନିର୍ମିତ ଲୁଗା । ୩୬-୨ କଦନେ—ପୀଡାରୁ । ମଦନ—କନ୍ଦର୍ପ । ଛେଦନ—କାଟିପକାଇବା । ପ୍ରତିଶାୟକ—ପ୍ରତିଶର । ୩୭-୧ ବାଳା—ନୂତନା ରମଣୀ । ସୁରକୁ—ଗୃହକୁ । କ୍ଷଣକ—କ୍ଷଣମାତ୍ର କେତେବେଳେ । ୩୭-୨ ନନ୍ଦାନନ୍ଦ ଦାୟିନୀ—ଯଶୋଦା । ସମୁକ୍ରିକ—ଉତ୍କଣ୍ଠିତ ବା ଶଙ୍କିତ । ୩୮ ୧ ସଂଯୋଗ—ସଂଯୁକ୍ତ । ଶ୍ୱେତ—ଶୁକ୍ଳବର୍ଣ୍ଣ ଓ ବଳରାମ । ଏକ୍ଷଣ—ଏହିକ୍ଷଣି । ଉଦେ—ଉଦୟ ହେବା । ପ୍ରକାଶକ—ପ୍ରକାଶ କରିବା ।

୩୮-୨ ବହୁଷକ—ପଣ୍ଡିତ ଓ ଯୋଗୀ । ୩୯-୧ ଗିର—କଥା । ହରି—ଶ୍ରୀକୃଷ୍ଣ । ହରିଣାକ୍ଷୀ—ମୃଗନୟନା ସ୍ତ୍ରୀ । ତ୍ର୍ୟମ୍ବକ—ଶିବ । ୪୦-୧ କଉଣିକ ଖଗ—ଏକପ୍ରକାର ଖଗ । ବେଣୁ—ବଂଶୀ । ଗର୍ଭାନ୍ତକ—ପେଟରୁ ଜଅାଁ ଖସିପଡ଼ିବା ଭଳି ଅବସ୍ଥା । ୪୦-୨ କଳୁଷହର—ଜଅାଁ । ବକ—ବକାସୁର । ୪୧—୧ କଳଲେ—ଅନୁମାନ କଲେ । ଦୁଷକ—ଅସୁବିଧା ବା କୌଣସି କଷ୍ଟ । ୪'-୨ ଭୁଜଙ୍ଗମ—ସର୍ପ । ବଟଳକ—ବଳାସକାଶ । ୪୨-୧ ଦୂଷଣ—ନିନ୍ଦା । ଅନ୍ତକ—ଏନ୍ଧାନ୍ଧାରେ ବା ଏକ୍ଷ ଶୀତରେ ୪୨-୨ ଦୂଷଣ ଅନ୍ତକ—ଶ୍ରୀରାମଚନ୍ଦ୍ର ।

---

## ନବମ ଛାନ୍ଦ

୧·୧ ରହସ୍ୟକ—ରହସ୍ୟକଥା । ୧-୨ କଳଙ୍କୀ—ଶ୍ରୀକୃଷ୍ଣ । ମୋହନ—ମୋହିତ ହେବା । ବଶ—ବଶୀଭୂତ ହେବା କଥା । ପୁଟଛ—ପଚାରେ । ବହୂଡକ—ପଣ୍ଡିତ । ୨·୧ କେଶବ—କେଶବ ଅର୍ଥାତ୍ ଶ୍ରୀକୃଷ୍ଣ । ପଦ୍ମା—ଚନ୍ଦ୍ରାବଳୀଙ୍କ ସଖୀ କାରୁଣିକ—ଘଟଣା ସମସ୍ତ । ୨-୨ ସୂଚକ—ସଙ୍କେତ, ଚିହ୍ନ ବା ନିଦର୍ଶନ । ୩-୧ ବଶକ—ବଶକାରୀ । କଦର୍ଥୀ—କଦର୍ଥରେ ବା ଦୁଃଖମନରେ । ତମେ—ଅନ୍ଧାରରେ । ଦାସ—ଅନୁଚର, ପଥ । ଅଳେକ—ଅଲ୍ପଅ ।୪-୧ ସୁମାର୍ଗକ—ଉତ୍ତମ ବାଟ । ୪-୨ ସୌନ୍ଦର୍ଯ୍ୟ କଟକ—ଶୋଭା ରୂପକ ନଗରୀ । ୫-୧ କଥା ହେଉଁ—କଥୋପକଥନ ହେବା ସମୟରେ । ଦୃଶକ—ଦୃଷ୍ଟିଗୋଚର ହେବା । ୫-୨ କଳାବତୀ—ସୁନ୍ଦରୀ ଓ ରସବତୀ ସ୍ତ୍ରୀ । ଗତ—ଗମନ । ଭାଷକ—କଥା । ୬-୧ ପାଛେଟି—ଅଗବଢ଼ି ଅଣିବା । ପେଷକ—ପଠାଇବା । ୬-୨ କସଲେ—ବନ୍ଦ ଘାଟିରେ । ନ ବର୍ତ୍ତି—ରକ୍ଷା ନ ହେବା । ରଣରଣକ—କନ୍ଦର୍ପ । ୭-୧ କବଚ ସିହାଇ—ବେଶଭୂଷା ହେବା । ପାର୍ଥକ—ସୁନ୍ଦର ଦେହଯୁକ୍ତା । ୭-୨ କଳମ୍ବ—ଶର ଓ ଏକ ପ୍ରକାର ଲତା । ସାୟକ—ଶର । ୮-୧ କଟାକ୍ଷ ପାତ—ଅଡ଼ଚାହାଣି । ସୁବନ୍ଧକ—ସୁନ୍ଦର କାହାର ବା

ଗୃହସବୁ । ୮-୨ କଟାକ୍ଷ ପାତ—ଅପାଙ୍ଗ ଦର୍ଶନ । ସୁଧା—ଅମୃତ ଓ ଚନ୍ଦ୍ର । ପିତଳକ – ପିତଳ । ୯-୧ ଦର୍ପକ—ହଂସ ବା ଖଗ । ୯-୨ ସମର୍ପକ—ଦେବାବ୍ୟକ୍ତ । ୧୦-୧ ବିପ ଦୃଷ୍ଟି—ବିରକ୍ତ ମନରେ ଦେଖିବା । ନାଶେ—ବିନାଶ କରେ । ସେବକ—ସେବାକାଙ୍କ୍ଷୀ । ୧୦-୨ ହତଯୋଗ—ଦୁର୍ଦ୍ଦଶା ବା ବିନାଶବେଳ । ତର୍କ୍କ—ତର୍କ୍କନାକାରୀ । ୧୧-୧ କଚ୍ଛ ସୁଧାରେ—ଗତି ଶୋଭରେ । ନଳିନୀ—ପଦ୍ମ । ଦୀପ୍ତକ—ତେଜୋବନ୍ତ ବା ପ୍ରଫୁଲ୍ଲିତ । ୧୧-୨ କନ୍ୟାନଳିନୀଟି—ପଦ୍ମିନୀ କନ୍ୟା, ସୁନ୍ଦରୀ ଓ ସୁଲକ୍ଷଣବତୀ କନ୍ୟା ଗୋଟି । ବିବେକ—ନ୍ୟେତ୍ରୁ । ୧୨—୧ ବୀର—ଶ୍ରେଷ୍ଠ ପୁରୁଷ,ବିପ୍ରଲମ୍ଭକ—ବିପ୍ରଲମ୍ଭ ଶବ୍ଦଜ ଅର୍ଥାତ୍ ବିରହୋକ୍ତି । ୧୨-୨ କଳା ଶୃଙ୍ଗାରର ଅଂଶ । ସମ୍ଭୋଗ—ଭୋଗ କରିବା । ସୁଧା—ଅମୃତ । ମୁଖିକ ତ୍ୟକ୍ତ କରିବା, ପିଡା ଲଗିବା । ୧୩-୧ ଜନିତ—ଜନ୍ମାଇବା । ମାନସାବେକ୍ଷକ—ମନଦେବା । ୧୩-୨ ହରି—ଶ୍ରୀକୃଷ୍ଣ । ୧୪-୧ ଖ୍ୟାତ—ପ୍ରକାଶ । ବାକ୍—ବଚନ । ୧୪-୨ କଉସ୍ତୁଭ—ଶ୍ରୀହରିଙ୍କ କଣ୍ଠରେ ଲମ୍ବିତ ଏକ ମଣି । ବିମ୍ବେ—ରୂପ ଦଶିବ ବୋଲି ଦକ—ଚନ୍ଦ୍ର । ୧୫-୧ ଦ୍ୱିଜ—ବ୍ରାହ୍ମଣ । କୋପନା—କୋପନ ସ୍ୱଭାବା ସ୍ତ୍ରୀ କିମ୍ବା କୋପକରନାହିଁ । ୧୫-୨ ପ୍ରଣୟ—ମିଳନ ଓ ପ୍ରେମ । ୧୬-୧ କଉଶଲ୍ୟା ଦାତା—ଆନନ୍ଦ ଦାୟିନୀ ବା ସୁଖଦାୟିନୀ । କଥକ—କଥା । ୧୬—୨ କୋପନା—କୋପନ ସ୍ୱଭାବା ସ୍ତ୍ରୀ । ତଥ୍ୟକ—ଠିକ୍ ବା ସତ୍ୟକଥା । ୧୭-୧ କଇରବ—କୁମୁଦିନୀ ଅର୍ଥାତ୍ କଇଁଫୁଲ ତୁଲ୍ୟ ହାସ୍ୟଯୁକ୍ତା । ୧୭-୨ କଥାମୟ—କହିବା କଥା । ବାଳା—ଯୁବତୀ ସ୍ତ୍ରୀ । ୧୮-୧ ଉତ୍‌ଫୁଲକ—ହର୍ଷଯୁକ୍ତ । ୧୮-୨ ବାଳେ—ମସ୍ତକର କେଶ ମଧ୍ୟରେ । ସୁମନ—ଫୁଲ । ରଞ୍ଜକ—ଖଞ୍ଜିଲ୍ଲ ବାଳ । ୧୯-୧ ବଞ୍ଚକ—ଚୋର, ଠକ । କଙ୍କଣକା—ପାଉଁଜି । ସୁପଞ୍ଚକ—ସୁନ୍ଦର ପଣ ୨୦-୧ କଉମୁଦୀ—ଚନ୍ଦ୍ର । ୨୦-୨ କପଟିତ—ଅବଗୃର କିମ୍ବା କପଟ କଥା । କରକ -ହାତ । ୨୧-୧ କଳାକେଳି—ଶୃଙ୍ଗାର ଲୀଳା ପଠେ—ପଢ଼ିବାରେ । ବିନାୟକ—ଗଣେଶ । ୨୧-୨ ଛଇଳା—ଶୋଭା ଯୁକ୍ତ । ବିଧାୟକ—ଉପଯୁକ୍ତ ବିଧାନ କର୍ତ୍ତା । ୨୨-୧ କସ—କସଇବା

କିମ୍ବା ଚୂଆ ପଥର । ବଣିକ—ବଣିଅଁ । ସୁଚେରତକ—ଉତ୍ତମ ରଚନା-
କାରୀ । ୨ -୨ କମଳାକ୍ଷୀ—ପଦ୍ମନେତ୍ରୀ । ,୨୩-୧ କଇରବ—କଇଁଫୁଲ
ତୁଲ୍ୟ ହାସ୍ୟଯୁକ୍ତା ସ୍ତ୍ରୀ ଓ ଜ୍ୟୋତ୍ସ୍ନାମୟୀ । ୨୩-୨ କର—ହାତ ।
୨୪-୧ ଅଭରସା—ଭରସା ହୀନ, ଉଚ୍ଚାରକ—ଉଚ୍ଚାରଣ କରିବା ।
କୋଇଶୋଷ—କ୍ରୋଶୋଷ ପଠକ—ପଢ଼ିବା । ୨୫-୧ ଦବ୍ୟ—ଉତ୍ତମ ।
ଧାତା—ବିଧାତା । ୨୫-୨ କରେ—ହାତରେ । ପାଷାଣ—ପଥର ।
ବନ୍ଧକ—ବନ୍ଧନ କରିବା, ଅଟକାଇ ରଖିବା । ୨୬-୧ ଗଜାନନ୍ଦନ—
ଗଜପୁତ୍ର । ୨୬-୨ କଳ୍ପ—ପାଏ । ବରୋଧକ—ବିରୁଦ୍ଧ, ଅଟକାଇବା ।
୨୭-୧ ପର୍ବକ—ପ୍ରାପ୍ତ । ୨୭-୨ ସୁଧା—ଅମୃତ । ସମ୍ମତକ—ଗଳି-
ହେବା । ୨୮-୧ କଥାମୃତେ—ବଚନ ରୂପକ ଅମୃତରେ ପ୍ରବର୍ତ୍ତିକ—
ପ୍ରବର୍ତ୍ତନକାରୀ । ୨୮-୨ ମୁଖର—ବହୁକଥା କରିବା ସ୍ତ୍ରୀ କିମ୍ବା କଠ
ଭାଷିଣୀ । ଅଶ୍ରିକ—ଆଶ୍ରୟକାରୀ । ୨୯-୧ ଗର୍ଭକ—ଗର୍ଭମଧ୍ୟ । ୨୯-୨
କଲବୃତ—ଯନ୍ତ୍ରାଦ ଦ୍ୱାରା । ସରୂପକ—ରୂପବନ୍ତ । ୩୦-୧ କଉମୋଦକୀ
ଧାରଣ—ଶ୍ରୀକୃଷ୍ଣ । ବନ୍ଦକ—ସମସ୍ତ ବା ବନ୍ଦା । ୩୦-୨ ବିକର୍ତ୍ତନ—ସୂର୍ଯ୍ୟ
୩୧-୧ ଅବଲୋକକ—ଛଇ ବା ରୂପ ଓ ଦେଖାଯିବା । ୩୧-୨ ଲୋକନ
—ଦେଖିବା । ୩୨-୧ ଠୋପିକ—ଠୋପି । ୩୨-୨ କର୍କସ୍ତନଷ୍ଟିତ—
କନ୍ଦର୍ପାନ୍ୱିତ । ରତିତୃଷ୍ଣକ—ରତି ଲାଳସା । ୩୩-୧ କ୍ଷତ—ଭେଦ ବା
ପୀଡ଼ା କାରକ । କଠିଣୀ—କଠିନ ହୃଦୟା । ପ୍ରୀତକ—ପ୍ରିୟ ବା
ପ୍ରୀତକଥା । ୩୩-୨ କର୍ଷି—କର୍ଷଣ କର । ଲାଙ୍ଗଳେ—ଲାଙ୍ଗଳ ଦ୍ୱାରା ।
ଅନଙ୍ଗ—କନ୍ଦର୍ପ । ହଳକ—ହଳୁଆ । ୩୪-୧ କଲ୍ପ—ଭୂମି, କଲଣା
କରିବା । ସାଧୁକ—ପୁଣ୍ୟବନ୍ତ । ସାରସ—ସରସତା ଓ ହଂସ ପ୍ରଭୃତି
ପକ୍ଷୀ । ବଟକ୍ଷପକ—ବୁଣିଲା ବାଲା । ୩୪-୨ ସଙ୍କୁରେଣ—ଉତ୍ତମ ଗଜା
ଯୁକ୍ତ । ତାରୁ—ଉଦ୍ଧାରିବା । ତାହାଲକ—ଶୀଘ୍ର ସେହିକ୍ଷଣି । ୩୫-୧
ଜଳନ—ଜଳ । ବଳାଇ—ବୃଦ୍ଧି କରାଇ । ସଫଳକ—ଫୁଲ୍ଲଯୁକ୍ତ ।
୩୬-୧ କୃତ—କରିବା । ସୁଗୀତକ—ଉତ୍ତମ ଗୀତ । ୩୬-୨ କରମେ
କରମେ—କ୍ରମେ କ୍ରମେ କିମ୍ବା ପୂର୍ବ ପୁଣ୍ୟ ବଳରୁ ଓ କରିବା ଦ୍ୱାରା ।
ଛନ୍ଦ—ଛନ୍ଦରୁ । କହନ୍ତୁକ—ଆନନ୍ଦ ।

---

## ଦଶମ ଛାନ୍ଦ

୧-୧ ଉଚ୍ଛ୍ୱଦା ଜାଣିକ—ଜ୍ୟୋତ୍ସ୍ନା ରାତ୍ର ବା ଜହ୍ନରାତ୍ର । ବିଚିତ୍ର—ବିଶେଷ ଭାବରେ ଚିତ୍ର ହୋଇଥିବା । ଦନ୍ଦଶୂକ—ସର୍ପ । ଧାରିତ—ଧାରିବା । ଦମ୍ପତି—ସ୍ତ୍ରୀ ଓ ପୁରୁଷ, ଦର୍ଶନେ—ଦେଖିବାରେ । ପାତକ—ପାପ । ୨-୧ କେଦଳୀଭୂତେ—ଏକତ୍ରିତ ହୋଇ । ଆରତେ—ବ୍ୟାକୁଳରେ । ଧ୍ୱନିକଲେ—ରବକଲେ । ବିଦେଶୀ—ଅନ୍ୟଦେଶୀ । ମଣ୍ଡୂକ—ବେଙ୍ଗ । ୨-୨ କମ୍ବୁ—ଶଙ୍ଖ । କାମିନୀ—ସ୍ତ୍ରୀ । ଜାଙ୍ଗଳିକ—ବିଷ ବୈଦ୍ୟ ବା ବେଲା । ୩-୧ ଅନ୍ତକ—ଶେଷ କରିବା ଓ ଯମ । ବଭ୍ରବସ୍ଥ—ସନ୍ଧି । ୩—୨ କରୁଣା ଗର୍ଭ ସମ୍ଭୂତା—କରୁଣା ଗର୍ଭରୁ ଜାତ ହୋଇଥିବା । ମଣ୍ଡିଲ—ସଜାଇଲ । ପର୍ଯ୍ୟଙ୍କ—ପଲଙ୍କ । ୪-୧ କଥାକେ—ଏକାକଥାକେ । ତାରାବଳୀ—ତାରା ସମୂହ ବା ଚନ୍ଦ୍ରମା ତୁଲ୍ୟ ଉଜ୍ଜ୍ୱଳହାରୀ ଚନ୍ଦ୍ରାବଳୀ । ୪-୨ କପୋତ ବାଣୀ—ହୁଁ ହୁଁ ଶବ୍ଦ । ସାମ୍ୟ—ସମାନରେ । ଭଦ୍ରା—ଏକାଦଶୀ । କଥିକ—କହିବାବାଲା । ୫-୧ ସାଗର—ସମୁଦ୍ର । ଲଙ୍ଘଇ—ପାରିହୋଇ । ୫-୨ କପାଟୀ—ଦ୍ୱାରର ଆବରଣ । ବେନି ଦଗେ—ଦୁଇ ଦଗରେ । ଆସାର—ବୃଷ୍ଟିପାତ । ପଦ୍ମରାଗ—ଏକ ପ୍ରକାର ମଣି, ପଦ୍ମ ପ୍ରାୟ ତେଜଯୁକ୍ତା ଓ ପଦ୍ମଗନ୍ଧା । ୬-୧ କଉଶଳ—କୌଶଳ । ନୃପତି—ରାଜା । ଦୁହିତା—ଝିଅ । ଧୃକ—ଧାରଣକାରୀ । ୬-୨ କାନ୍ତି—ଦେହର ତେଜ ଓ ବର୍ଣ୍ଣ । ଚମ୍ପା—ଚମ୍ପା ଫୁଲ । ଶମ୍ପାକ—ବିଜୁଳି । ୭-୧ ଊରୁସ୍ତମ୍ଭ—ଜଙ୍ଘ ରୂପକ ସ୍ତମ୍ଭ । ସମ୍ପୁଟକ—ଫରୁଆ । ୭-୨ କଳେବର—ଦେହ । ଅଦୃଷ୍ଟକ—ଦେଖା ନ ହେବା । ୮-୧ କସ୍ୱଗାମୀ—ଗଜଗମନା । ମୁକୁର—ଆରସି । ୮-୨ ବର—ସ୍ୱାମୀ ବା କନ୍ୟାର ବିବାହ ନିମନ୍ତେ ତାହାର ସ୍ୱାମୀ । ବିବାହୃତେ—ବିବାହ ନିମନ୍ତେ । ଜନକ—ପିତା । ୯-୧ କର୍ପୂରମଞ୍ଜରୀ—ଏକ ସୁନ୍ଦରୀ କନ୍ୟା । ଭୂନାୟକ—ରାଜା । ୯-୨ କଉମାରେ—କୁମାର ଅର୍ଥାତ୍ ପୁତ୍ର । ଦିବ୍ୟଘୋଟକ—ଉତ୍ତମ ଘୋଡ଼ା । ୧୦-୧ ଆରୋହଣ—ଚଢ଼ିବା ।

ପ୍ରଚେଟ—ପ୍ରଚେଷ୍ଟା ନାମକ ଏକ ଭଣ୍ଡାର । ମାଧବ—ସେହି ରାଜପୁତ୍ରର ନାମ । ପଥିକ—ପଥ ଚାଲିବା ବ୍ୟକ୍ତି । ୧୦-୨ ବାରି—ଜଳ । ଖୁରି—ଟାପୁ । ହୟ—ଘୋଡ଼ା । ସିନ୍ଧୁଜାତକ—ସିନ୍ଧୁଜାତ ଅର୍ଥାତ୍ ଅତି ବେଗଗାମୀ । ୧୧-୧ କଟକ—ନଗର । ମାଳତୀ—ମାଲୁଣୀ । ଅର୍ଥକ—ଧନଦେବା । ୧୧-୨ ଅଳୀକ—ବିରସ ମନ । ୧୨-୧ କବରୀ—କେଶ । ରାଜାକୁମାରୀ—ରାଜା ଝିଅ । ପୁଷ୍ପସ୍ତବକ—ଫୁଲହାର । ୧୨-୨ ବାଞ୍ଛା—ଅଣାଯୁକ୍ତ ଉତ୍ତର । ଦାଣ୍ଡେଯିବା—ଚାଲିଯିବା । ପ୍ରଚାରକ—ପ୍ରଚାର କରିବା । ୧୩-୧ କର୍ପୂର ଅଙ୍ଗ—ସୁବର୍ଣ୍ଣ ଦେହ । ଏକାନ୍ତରେ—ନିର୍ଜ୍ଜନ ସ୍ଥାନରେ । ପାଠକ—ପଢ଼ିଲବାଲା । ୧୩-୨ ପ୍ରାନ୍ତେ—ଶେଷରେ । ଦର୍ଶକ—ଦର୍ଶନକାରୀ । ୧୪-୧ ଜଗତ—କୋଠା, ଅଟ୍ଟାଳିକା । ଅବେଦନ—ଚିଠି । ବରବେହା—ସୁକନ୍ୟା ଅର୍ଥାତ୍ ସୁଲୋଚନା । ସଉସ୍ରୁକ—ତୋଷଯୁକ୍ତା । ୧୪-୨ କରଶାଖା—ହସ୍ତ ଅଙ୍ଗୁଳି । ଦସ୍ତାଧପଟକ—ସଙ୍କେତ ବା ନିଦର୍ଶନ । ୧୫-୧ କଳକଣ୍ଠ—କୋଇଲି । ଦର—ଅର୍ଦ୍ଧଭିବ ଓ ଭୟ । ବଶ—ବଶୀଭୂତ । ଅତରକ-ତରଙ୍କ ନ ଥିବା ବା ଅକପଟତା । ୧୫-୨ ମାଧବ—ରାଜପୁତ୍ର, ବୈଶାଖ ମାସ ଓ ବସନ୍ତ ଋତୁ । ଆଶ୍ଳେଷ—ଆକର୍ଷଣ ଓ ପ୍ରବେଶ । ଋତୁମତୀ—ଶ୍ରେଷ୍ଠା ସ୍ତ୍ରୀ ଓ ପୁଷ୍ପାଦରେ ମଣ୍ଡିତ ବୃକ୍ଷ ଲତାଦ । ବିଳାସକ—ବିଳାସକାରୀ । ୧୬-୧ କଥିତା—କହିଲି । ଗନ୍ଧସଣେ—ଅଧିବାସ କର୍ମରେ । ହସ୍ତକ—ହାତ । ୧୬-୨ କର—ହାତ । ହୟେ—ଘୋଡ଼ା ଉପରେ । କଟକ—ଭୁବନ । ୧୭-୧ ନଳନୀ—ପଦ୍ମିନୀ କନ୍ୟା ଅର୍ଥାତ୍ ସୁଲୋଚନା । ଯୁପୁରୁଷ—ରାଜପୁତ୍ର ମାଧବ । ଜାଗରୁକ—ହେତୁବନ୍ତ କିମ୍ବା ନିଦ୍ରାରେ ଅସକ୍ତ ହୋଇ । ୧୭-୨ କରବାଳ—ଖଡ଼୍ଗ । ବାଜୀ—ଘୋଡ଼ା । ଚେଟକ—ପ୍ରଚେଷ୍ଟା ଭଣ୍ଡାର । ୧୮-୧ ଅବାବୃତ—ଶୂନ୍ୟ ମାର୍ଗରେ । ଆକର୍ଷକ—ଟାଣିନେବା । ୧୮-୨ ହରି—ହରଣ କରି । ବାରଧି—ସମୁଦ୍ର । ଲଙ୍ଗିଗଲି—ଡେଇଁଗଲା । ୧୯-୧ କୁମର—ରାଜପୁତ୍ର ମାଧବ । ଅବା—ସ୍ତ୍ରୀ କଥା ବା ସେହି ଘଟଣା । ଶ୍ରବଣେ—ଶୁଣିକରି । ୧୯-୨ ଚତ୍ୱରରେ—ଅଗଣାରେ । ଚେଟ—ପ୍ରଚେଷ୍ଟା ଭଣ୍ଡାର । ଘୋଟକ-

ନେଓ୍ବାହ୍ନା । ୨୦-୧ ବେଣି—ଦୁଇ । ଅସର—ଫୁଲୁସବୁ । ପ୍ରକୃତି ପାଳକ—ବିଧାତା, ଦଇବ ଓ ଈଶ୍ୱର । ୨୦-୨ ରାଜସୁତା—ରାଜାଝିଅ । ମାଳାକାରୀ—ମାଳୁଣୀ । ୨୧-୧ କେମା—ରାଜକନ୍ୟା । ଅନ—ଅନ୍ୟଲୋକ । ଅବଲୋକ—ଦେଖିବା । ୨୧-୨ କର୍ବଟ—ମର୍ତ୍ତ୍ୟପୁର । ଅପସରୀ—ସ୍ୱର୍ଗବେଶ୍ୟା । ୨୨-୧ କାର୍ପାସ କୁସୁମ—କପାଫୁଲ । କାମ୍ୟକ—ବାଞ୍ଛା କରିବା । ୨୨-୨ କର୍ବୁରୀ—ନାନାରଙ୍ଗ ଯୁକ୍ତ । ସୂତ୍ର—ସୂତା । କୁନ୍ଦରେ—କୁନ୍ଦିବାରେ । ଅଲଭ୍ୟକ—ନ ମିଳିବା । ୨୩-୧ କପାଳି—ଭାଗ୍ୟବନ୍ତ ଓ କପାଳବନ୍ତିଆ ଲୋକ । ସମ୍ପତ୍ତି—ସମ୍ପଦ ବା ସ୍ୱର୍ଣ୍ଣ । ରଙ୍କ—କାଙ୍ଗାଳ ବା ଦରିଦ୍ର ପଣ । ବାସ୍ତୁକ—ଲୋଭ । ୨୩-୨ କନ୍ୟା—ରାଜକନ୍ୟା । ସାର୍ଦ୍ଧି—ଶେଷକରି ଅଥବା ସ୍ୱାମୀ । ପ୍ରବେଠକ—ପ୍ରବେଷ୍ଟା ଭଣ୍ଡାର । ୨୪-୧ ଅସିକ—ଖଡ୍ଗକୁ । ସମୁଦ୍ରକ—ଅଳଟେଡାଣି । ୨୪-୨ ବାସ—ବସତି ବା ଗୃହ । ବାଜି-ପାଳକ—ଅଶ୍ୱପାଳ କର୍ମି । ୨୫-୧ କବାର—ଜଳ । କାଶାର—କେଜେଇ । ଗୋପ୍ୟ—ଗୁପ୍ତ । ଠୋପର ମସ୍ତକ—ମୁଣ୍ଡରେ ପାଗବାନ୍ଧିବା ବା ଟୋପି ପିନ୍ଧିବା । ୨୫-୨ କଙ୍କଣ—ହସ୍ତର ଅଳଙ୍କାର । ମୁଦ୍ରିକା—ମୁଦି । ନାସାପୁଟକ—ନାସାପୁଡ଼ାରେ । ୨୬-୧ ରାଜପୁତ୍ରୀ—ରାଜାଝିଅ । ଖଣ୍ଡନେ—ଖଣ୍ଡନ କରିବାରେ । ୨୬-୨ କପିଳ ଧାର ଯାସ ସ୍ଥାନ—ଗଙ୍ଗା, ଯମୁନା ଓ ସରସ୍ୱତୀର ମିଳିତ ସ୍ଥାନ । ଯହିଁରେ ପରଜନ୍ମରେ ସୁଖୀ ହେବାକୁ ବାଞ୍ଛା କରି ମନୁଷ୍ୟମାନେ ଯାସ ଦିଅନ୍ତି ସେହି ଘାଟ । ଜାଗ୍ରତ—ଉଜାଗର ବା ନିଜକୃତ୍ୟ ସାଧନରେ ରତ । ପଦକ—ନିଜପଦ ବା ସୈନିକ ପଦ । ୨୭-୧ ବେଣି ପୁଂସ—ଦୁଇ ପୁରୁଷ । ବଣିକ—ବଣିଆ । ୨୭-୨ କଷଣି—କଷି ରଖିବା ସ୍ଥାନ । ଜାହ୍ନବୀ—ଗଙ୍ଗା । ଲକ୍ଷ—ଲକ୍ଷ୍ୟ । ଲକ୍ଷକ—ଲକ୍ଷ୍ୟକାରୀ । ୨୮-୧ କଷା—ପ୍ରତିଜ୍ଞା, ଆଶା । ପ୍ରବେଷ୍ଟ—ଭଣ୍ଡାର ବିଶେଷ । ଅଠକ—ଅଟକାଇବା । ୨୮-୨ କପଟ ରାଜଜାମାତା—ଗୁପ୍ତ ବେଶଧାରୀ ରାଜା କ୍ୱାଳି ଅର୍ଥାତ୍ ସୁଲୋଚନା । ପଦାତ—ପଦାତିକ ଅର୍ଥାତ୍ ଚପରାଶି ବା ଗୃକର୍ । ବେଷ୍ଟକ—ମିଳିତ ହୋଇ । ୨୯-୧ କମଳା ଗଉରୀ—ଟସନ୍ଧି ଦେଶ ରାଜକନ୍ୟାଙ୍କ ଦୁଇ

ତୁଅ । ଛାଣ—ସ୍ୱାମୀ । ସଂସ୍ଥାପକ—ସ୍ଥାପକ । ୨୯-୨ କଳି—କଲନା ; କାଳ ବା କଳିଳ । ସୁଚଣ୍ଡୀ ଅଚନ—ଦେବୀଙ୍କ ସ୍ନାନ ଓ ମାର୍ଜନା ପ୍ରଭୃତି ପୂଜା । ବିଦ୍ୟାଧର—ସୁଟେଲଚନାକୁ ବିବାହ ହେବା ନିମନ୍ତେ ଅସି ଲଙ୍କାପାଇ ଫେରି ଯାଉଥିବା ରାଜପୁଅ । ସମର୍ପକ—ସମର୍ପଣ କରିବା । ୩୦-୧ ପ୍ରଚେତକ୍ଷ—ପ୍ରଚେତା ଭଣ୍ଡାରର । ବାନ—ବାମ । ଦଣ୍ଡପାଳ—ଦଣ୍ଡପାଳ । ବିଯାରିକ—ପଳାଇ ଯିବା । ୩୦-୨ ସାମ—ବେଦ ବିଶେଷ । ମୂକ—ଯାହାର ମୁଖ ନ ଫିଟେ ବା ଯେ କଥା କହି ନ ପାରେ । ୩୧-୧ ନିର୍ମାଣକ—ନିର୍ମାଣକାରୀ । ମହାରମଣୀୟ—ଅତ୍ୟନ୍ତ ସୁନ୍ଦର । ୩୧-୨ କାମ—କାର୍ଯ୍ୟ ଓ କନ୍ଦର୍ପ । ଅହଲ୍ଲ—ଅହଲ୍ୟା ଅର୍ଥାତ୍ ଗୌତମ ଋଷିଙ୍କ ପତ୍ନୀ । ଭାନୁ—ସୂର୍ଯ୍ୟ । ଜମ୍ଭଦୈକ—ଇନ୍ଦ୍ର, ଅସୁର ଓ ଗଣ୍ଡା । ୩୨-୧ ପ୍ରଦକ୍ଷିଣ—ଚାରିପାଖ ବୁଲିବା ବା ନମସ୍କାର କରିବା । ହର ଅବେରାହକ—ଦୁର୍ଗା । ୩୩-୧ ରମାନାୟକ—ସ୍ତ୍ରୀ ପୁରୁଷ । ତପନତି—ସୂର୍ଯ୍ୟ । ବାସବ—ଇନ୍ଦ୍ର । ଅଭିମାନକ—ଅଭିମାନକାରୀ । ୩୪-୧ କଲପେ—ସଜ୍ଜନା କରେ । ରସବାକ୍ୟ—ମଧୁର ବଚନ । ପ୍ରଦାୟକ—କହିଲବାଲ । ୩୪-୨ କରତ—ଅସ୍ତ୍ର ବିଶେଷ ଓ ହସ୍ତ । ଗତ—ଗମନ । ତତପ୍ରାପ୍ୟେକ—ତସ୍କରପରି । ୩୫-୧ ଅଙ୍ଗକୁ—ଦେହକୁ । ଉସ୍ମ—ପ୍ରାଣ । ୩୫-୨ ଅଂଶୁକ—ଲୁଗା । ୩୬-୧ ଦିନମଣି—ସୂର୍ଯ୍ୟ । ବାଳା—ନୂତନା ସ୍ତ୍ରୀ । ଦଗ୍ଧିକ—ପୋଡ଼ି ଜଳିଯିବା । ୩୬-୨ ପ୍ରଦ୍ୟୋତକ—ପ୍ରକାଶକ । ୩୭-୧ ବେନିକର—ଦୁଇହାତ । ଏକାନ୍ତରେ—ନିର୍ଜନରେ । ବିନାୟକ—ଗଣେଶ । ୩୭-୨ କପିଫଲାଶନ—କପିଫଳ ଭୋଜନ । ଇକ୍ଷୁ—ଆଖୁ । ପାନ—ପିଇବା । ଯନ୍ତ୍ରକ—ଯନ୍ତ୍ରପେଷକାରୀ । ୩୮-୧ କଳେବର—ଦେହ । ତ୍ୟକ୍ତକ—ତେଜିବା । ୩୮-୨ ଧାତା—ବିଧାତା । ଅନ—ଅନ୍ୟ । ଜନକ—ପିତା । ୩୯-୧ ପ୍ରତଶୀଳ—ଭାର୍ଯ୍ୟା । ଦୈନ୍ୟକ—ଦୈନ୍ୟଯୁକ୍ତ । ୩୯-୨ ଥିଭ—ଠିକ । ସୁଚରିତକ—ଉତ୍ତମ ଲାଗିବା । ୪୦-୧ ଉଲୁଖକ—ଅଧିଆ ବା ଉଷ୍ମାକ୍ରାନ୍ତ । ୪୦-୨ କଞ୍ଜ—ପଦ୍ମ । ଆଜନ୍ମ—ଜନମ କାଳରୁ । ଦୋଷକ—ଦୋଷଯୁକ୍ତ ।

---

ମୁଦ୍ରାକର—ଶ୍ରୀ ବିଶ୍ୱମ୍ଭର ପରିଡ଼ା ପ୍ରଚାଡକ ପ୍ରେସ, କଟକ—୨